# ଭାରତ ଗୌରବ

( ତ୍ରିଂଶ ଖଣ୍ଡ )

ଲେଖକ :

**ଶ୍ରୀ ରମାକାନ୍ତ ମିଶ୍ର, ଏମ୍. ଏ.**

ଢ : ମ୍ୟୁଜ, ଗଷ୍ଟ୍ରସ୍ୱାଧାରନ୍

ଜନଶକ୍ତି ପୁସ୍ତକାଳୟ

ପ୍ରକାଶକ :

ଏମ୍. ଏଲ୍. ଗୁପ୍ତା

**ଜନଶକ୍ତି ପୁସ୍ତକାଳୟ**

ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ :

ଡିସେମ୍ବର—୧୯୮୯

ମୂଲ୍ୟ ଟ ୫-୦୦

ମୁଦ୍ରକ :

ବର୍କୋ ପ୍ରେସ୍,

ଓଡ଼ିଆବଜାର, କଟକ-୨

# ସୂଚୀପତ୍ର





# ମହର୍ଷି ବାଲ୍ମୀକି

ସଂସାରରେ ମହାପୁରୁଷମାନେ ସେମାନଙ୍କର ମହତ୍ ଏବଂ ପବିତ୍ର କାର୍ଯ୍ୟଯୋଗୁଁ ଯୁଗ ଯୁଗ ଧରି ମଣିଷ ସମାଜରେ ବଞ୍ଚି ରହନ୍ତି । ତାଙ୍କର କାର୍ଯ୍ୟଗୁଡ଼ିକ ହିଁ ଆଗାମୀକାଲର ମଣିଷ ପାଇଁ ଆଦର୍ଶ ହୋଇ ରହେ । ଜୀବନ ପଥରେ ଆଗେଇ ଚାଲିବା ସକାଶେ ମଣିଷ ପ୍ରେରଣା ପାଇଥାଏ ।

ମହର୍ଷି ବାଲ୍ମୀକି ସେହିପରି ଜଣେ ମହାପୁରୁଷ ଥିଲେ । ସେ କେବଳ ଆଦିକବି ରୂପେ ଆଦର କିମ୍ବା ସମ୍ମାନ ପାଇ ନାହାନ୍ତି ବରଂ ନିଜର ମହତ୍ ଏବଂ ପବିତ୍ର କର୍ମଯୋଗୁଁ ଭାରତର ଋଷିମାନଙ୍କ ମଧ୍ୟରେ ବି ଶ୍ରେଷ୍ଠ ଆସନ ଗ୍ରହଣ କରିଛନ୍ତି ।

ଗୋଟିଏ ବ୍ରାହ୍ମଣ କୁଳରେ ମହର୍ଷି ବାଲ୍ମୀକିଙ୍କର ଜନ୍ମ । ତାଙ୍କର ପିଲାଦିନର ନାଁ ଥିଲା ଅଗ୍ନିଶର୍ମା ।

ତାଙ୍କ ପିତା, ଲୋକମାନଙ୍କର ପୂଜା, ଶ୍ରାଦ୍ଧ ଆଦି କରି ପରିବାରକୁ ଚଳାଉଥିଲେ । ନିଜ ପୁଅକୁ ଢଙ୍ଗରେ ନେଇ ମଧ୍ୟ

ସେ ଗାଁ ଗାଁ ବୁଲୁଥିଲେ । ଧର୍ମ ଶିକ୍ଷା ଦେଉଥିଲେ । ଅଗ୍ନିଶର୍ମା ପିଲାଦିନୁ ଖୁବ୍ ସରଳ । ଖୁସିବାସିରେ ଦିନ କଟାଇବାକୁ ଭଲ ପାଉଥିଲେ । ପିତାମାତାଙ୍କ କଥାକୁ ଆଦର ସହକାରେ ପାଳନ କରୁଥିଲେ । ପାଖ ପଡ଼ଶାର ପିଲାମାନେ ମଧ୍ୟ ତାଙ୍କ ଚରିତ୍ର ପ୍ରତି ଆକୃଷ୍ଟ ଥିଲେ । ଖେଳ ସମୟରେ ତାଙ୍କୁ ମୁଖିଆ ରୂପେ ମାନୁଥିଲେ ।

ବାଳକ ଅଗ୍ନିଶର୍ମାଙ୍କୁ ତାଙ୍କ ପିତା ଘରେ ପାଠ ପଢ଼ାଉଥାନ୍ତି । ଉତ୍ତମ ଆଚରଣ ପାଇଁ କହନ୍ତି । ଧୀରେ ଧୀରେ ଅଗ୍ନିଶର୍ମା ବଡ଼ ହେଲେ । ପାଖ ପଡ଼ଶାର ପିଲାଙ୍କ ସାଥୀରେ ଖେଳିବାକୁ ବେଶୀ ବାହାରକୁ ଗଲେ । ଖରାପ ପିଲାଙ୍କ ସଙ୍ଗଦୋଷରେ ନପଡ଼ିବା ପାଇଁ ପିତାମାତା ତାଙ୍କୁ ଅନେକ ବୁଝାନ୍ତି, କିନ୍ତୁ ଖେଳର ଆନନ୍ଦ ଭିତରେ ସେ ସବୁ ଭୁଲିଯାଆନ୍ତି । ଖରାପ ପିଲାଙ୍କ ଠାରୁ ସେ ଦୂରେଇ ରହିପାରିଲେ ନାହିଁ । ପିତା-ମାତା, ପୁଅର ଏ ଅଭ୍ୟାସ ଦେଖି ଖୁବ୍ ଚିନ୍ତିତ ହେଲେ । ପୁଣି ଅନେକ ବୁଝାଇଲେ । ଭଲବାଟରେ ପୁଅକୁ ନେବାପାଇଁ ବିଭିନ୍ନ ଉପାୟ ଖୋଜିବାରେ ଲାଗିଲେ । କାରଣ ପିଲାଦିନୁ ଏ ଖରାପ ଅଭ୍ୟାସ ନ ଛାଡ଼ିଲେ ଭବିଷ୍ୟତରେ ଅବସ୍ଥା ଆହୁରି ଭୟଙ୍କର ହେବ ।

ଅନେକ ଭାବିଚିନ୍ତି ସେମାନେ ଠିକ୍ କଲେ ଯେ, ଅଗ୍ନିଶର୍ମାଙ୍କୁ କୌଣସି ମୁନିଙ୍କ ଆଶ୍ରମକୁ ପଠାଇବେ । ସେଠାରେ ନିଶ୍ଚୟ ସେ ବଦଳିଯିବେ । ସେତେବେଳେ ଅରଣ୍ୟର ଶାନ୍ତ ବାତାବରଣରେ ମୁନିମାନଙ୍କର ଆଶ୍ରମ ଥିଲା । ପାଠ ପଢ଼ିବା ପାଇଁ ବାଳକମାନେ ଅନେକ ଦୂରରୁ ମଧ୍ୟ ଆଶ୍ରମକୁ ଆସୁଥିଲେ । ସେମାନେ ସବୁ

ପାଠପଢ଼ି ପଣ୍ଡିତ ହେବାପରେ ଯାଇ ଆଶ୍ରମରୁ ଛୁଟି ପାଉଥିଲେ ।

ଅଗ୍ନିଶର୍ମାଙ୍କ ପିତା ଦିନେ ପାଖରେ ଥିବା ଜଙ୍ଗଲର ଏକ ଆଶ୍ରମକୁ ଗଲେ । ସେଠାକାର ଆଚାର୍ଯ୍ୟଙ୍କୁ ନିଜ ପୁଅ କଥା କହି ତାଙ୍କୁ ସୁଧାରିବା ପାଇଁ ଅନୁରୋଧ କଲେ । ଆଚାର୍ଯ୍ୟ ମୁନି ତାଙ୍କ ଅନୁରୋଧ ଏଡ଼ି ପାରିଲେ ନାହିଁ ।

ଅଗ୍ନିଶର୍ମାଙ୍କୁ ଆଶ୍ରମକୁ ପଠାଇ ଦିଆଗଲା । କିଛିଦିନ ଯାଏଁ ଆଶ୍ରମ ଜୀବନ ତାଙ୍କୁ ବଡ ଅଡୁଆ ମନେହେଲା । ସବୁବେଳେ ଖାଲି ଭାବିଲେ, କେମିତି ଏଠୁ ଘରକୁ ଚାଲିଯିବେ । ସେଠାରେ ଥିବା ଅନ୍ୟ ବିଦ୍ୟାର୍ଥୀମାନେ ପ୍ରତିଦିନ ନିୟମ ଅନୁସାରେ ପାଠ ପଢ଼ନ୍ତି ଏବଂ କାମ ମଧ୍ୟ କରନ୍ତି । ବେଦ, ଉପନିଷଦ ଆଦିକୁ ମୁନି ସରଳଭାବେ ବୁଝାଇ ଦିଅନ୍ତି । ତା'ପରେ କିଏ କେଉଁ କାମରେ ଲାଗିଯାନ୍ତି । କିଏ ହୋମପାଇଁ କାଠ ଆଣେ, କିଏ ଆଶ୍ରମର ଗାଈ ଚରାଏ, କିଏ ଫୁଲ ତୋଳେ, କିଏ ଖାଦ୍ୟଶସ୍ୟ ଆଣିବାକୁ ଯାଏ, କିଏ ଫଳମୂଳ ସଂଗ୍ରହ କରେ ତ ଆଉ କିଏ ଆଶ୍ରମକୁ ସଫାସୁତୁରା ରଖେ ।

ଅଗ୍ନିଶର୍ମା ଗାଈ ଚରାଇବାକୁ ଭଲ ପାଆନ୍ତି । ଦିନସାରା ତ ପାଠରେ ମନ ଲାଗେନାହିଁ, ତଥାପି କୌଣସି ପ୍ରକାରେ କଷ୍ଟେମଷ୍ଟେ ରହିବାକୁ ପଡ଼େ । ଆଶ୍ରମରେ ବିଦ୍ୟାର୍ଥୀମାନଙ୍କର କୌଣସି ପ୍ରକାର ଅସୁବିଧା ନ ହେବାପାଇଁ ଆଚାର୍ଯ୍ୟ ଦୃଷ୍ଟି ଦେଉଥାନ୍ତି, କିନ୍ତୁ ନିୟମପାଳନ ଓ ବିଦ୍ୟାଶିକ୍ଷାରେ ସେ ଖୁବ୍ କଠୋର

ନେଉଥାନ୍ତି । ସେଥିପାଇଁ ଅଗ୍ନିଶର୍ମା କେମିତି ଆଶ୍ରମ ଛାଡ଼ି ପଳାଇବେ ସବୁବେଳେ ଭାବୁଥା'ନ୍ତି ।

ଆଶ୍ରମଠାରୁ ଅଳ୍ପ ଦୂରରେ ଘୋର ଜଙ୍ଗଲର ଆରମ୍ଭ । ସେଠାରେ ଡାକୁମାନଙ୍କର ଆଡ୍‌ଡାସ୍ଥଳୀ ଥାଏ । ଡାକୁମାନେ ଲୁଟ୍‌ପାଟ୍ କରି, ଧନରତ୍ନ ଆଣି ସେଠାରେ ସୁଖରେ ରହୁଥାନ୍ତି ।

ଆଚାର୍ଯ୍ୟ ମୁନି ସବୁବେଳେ ନିଜ ଶିଷ୍ୟମାନଙ୍କୁ ଅରଣ୍ୟର ସେ ଅଞ୍ଚଳକୁ ନଯିବା ପାଇଁ କହନ୍ତି । ମୁନିଙ୍କର ଆଦେଶକୁ ପାଳନ ନ କଲେ କଠୋର ଦଣ୍ଡ ସହିବାକୁ ପଡ଼ୁଥିବାରୁ କେହିହେଲେ ସେ ଅଞ୍ଚଳକୁ ଯାଆନ୍ତି ନାହିଁ ।

ଦିନେ ଆଶ୍ରମର ସବୁ ଛାତ୍ର୍ୟାର୍ଥୀ ଏବଂ ଆଚାର୍ଯ୍ୟ କୌଣସି ଏକ ଦରକାରୀ କାର୍ଯ୍ୟରେ ବାହାରକୁ ଚାଲିଗଲେ । ଆଶ୍ରମ ଗୋଶାଳାର ଦେଖାଶୁଣା କରିବାକୁ ଏବଂ ଗାଈମାନଙ୍କୁ ଚରାଇ ଆଣିବାପାଇଁ ଅଗ୍ନିଶର୍ମାଙ୍କୁ ଦାୟିତ୍ୱ ଦିଆଯାଇଥିଲା, କିନ୍ତୁ ସମସ୍ତ ବାହାରିଯିବା ପରେ ସେ ଗାଈ, ବାଛୁରୀଙ୍କୁ ନେଇ ଜଙ୍ଗଲକୁ ଚାଲିଗଲେ । ଚାରିଆଡେ ମନଖୁସିରେ ବୁଲିବାପାଇଁ ତାଙ୍କର ଇଚ୍ଛା ହେଲା । ସେ ଗାଈ-ବାଛୁରୀଙ୍କୁ ଗୋଟିଏ ଜାଗାରେ ଛାଡ଼ିଦେଇ ଘଞ୍ଚ ଅରଣ୍ୟ ଭିତରକୁ ବୁଲିବାପାଇଁ ଗଲେ । ପ୍ରକୃତିର ଶୋଭାକୁ ଚାହିଁ ଚାହିଁ ସେ ଯାଇ ପହଞ୍ଚିଲେ ସେଇ ଡାକୁମାନଙ୍କର ଆଡ୍‌ଡାସ୍ଥଳୀରେ । ସେଠି କେତେଜଣ ଡାକୁ-ପିଲଙ୍କ ସହିତ ତାଙ୍କର ଦେଖାହେଲା ।

ଡାକୁ-ବାଳକମାନେ ଅଗ୍ନିଶର୍ମାଙ୍କୁ ଆଦର କରି ନିଜ ଗୁମ୍ଫା ଭିତରକୁ ନେଇଗଲେ । ଗୁମ୍ଫା ଭିତରେ ଖୁବ୍ ସୁନ୍ଦରଭାବେ

ସବୁ ସଜା ହୋଇଥାଏ । ଭିତରେ ଶ୍ରେଷ୍ଠ ମହଲଟିଏ । ମହଲ ବାହାରେ ଡାକୁ ସର୍ଦ୍ଦାର ବସିଥାଏ । ଏ ନୂଆ ବାଳକଟିକୁ ଦେଖି ପାଖକୁ ଡାକି ସବୁ ପଚାରିଲା ।

ଶେଷରେ ଡାକୁ ସର୍ଦ୍ଦାର ତାକୁ ଭଲ ଖାଦ୍ୟ ଖାଇବାକୁ ଦେଇ କହିଲା, "ତୁମେ ମିଛରେ ନିୟମ ପାଳନ କରି, କଷ୍ଟ ସହି ଆଶ୍ରମରେ ରହିଛ । ଦେଖ—ଏ ବାଳକମାନେ ଏଠି ଖାଇପିଇ କେତେ ଆନନ୍ଦରେ ଅଛନ୍ତି । ସେମାନଙ୍କର କିଛି ଅଭାବ ନାହିଁ । ମଣିଷ କେତେଦିନ ଅବା ବଞ୍ଚିବ ? ଯେତେଦିନ ବଞ୍ଚିବ ଖୁସିରେ କାହିଁକି ବଞ୍ଚିବ ନାହିଁ ? ଆମ ଏ ପିଲାମାନେ ଧନୀ ଲୋକଙ୍କୁ ଲୁଟ୍ କରି ଧନ ଆଣୁଛନ୍ତି । ନିଜେ ଖାଉଛନ୍ତି ଏବଂ ଗରିବଙ୍କ ଭିତରେ ବି ବାଣ୍ଟୁଛନ୍ତି । ଖାଇପିଇ ଆନନ୍ଦରେ ବଞ୍ଚିବା ହିଁ ଆମର କର୍ତ୍ତବ୍ୟ । ଏ ଜୀବନ ସହିତ ତୁମ ଜୀବନକୁ ତୁଳନା କରି ଦେଖ । ଯଦି ଇଚ୍ଛା ହେଉଛି, ତେବେ ତୁମେ ମଧ୍ୟ ଆଶ୍ରମକୁ ଛାଡ଼ି ମୋର ଏ ଦଳରେ ଯୋଗ ଦେଇପାର ।"

ଏ କଥା ଶୁଣି ଅଗ୍ନିଶର୍ମାର ମନ ବଦଳିଗଲା । ଆଶ୍ରମର ଧନ୍ଦା ତାକୁ ତ ଭଲ ଲାଗୁ ନ ଥିଲା । ସେ ସଙ୍ଗେ ସଙ୍ଗେ ସେଠାରୁ ଫେରିଆସି ଗାଈ-ବାଛୁରିଙ୍କୁ ନେଇ ଆସିଲା ଆଶ୍ରମକୁ । ଭାବିବାକୁ ଲାଗିଲା, ଯିବ କି ନାହିଁ । ଡାକୁ ସର୍ଦ୍ଦାର ପ୍ରକୃତରେ ଠିକ୍ କଥା କହିଛନ୍ତି । ମୁନି ଏବଂ ଅନ୍ୟ ବିଦ୍ୟାର୍ଥୀମାନେ ଆଶ୍ରମକୁ ଫେରିବା ପୂର୍ବରୁ ସେ ଚାଲି ନ ଗଲେ ଆଉ ଯାଇପାରିବ ନାହିଁ । ସେ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଲା । କିଛିକ୍ଷଣ ଚିନ୍ତା କରିସାରି ସେ ଠିକ୍ କଲା, ଚାଲିଯିବ । ଆଉ ଅପେକ୍ଷା କଲା ନାହିଁ । ଖୁବ୍ ଚଞ୍ଚଳ ସେଇ ଡାକୁ ଆଡ୍ଡାସ୍ଥଳୀକୁ ଅଗ୍ନିଶର୍ମା ଚାଲିଗଲା ।

ଡାକୁ ସର୍ଦ୍ଦାର, ସେ ଆସୁଥିବାର ଦେଖି ଖୁସି ହୋଇଗଲା । ସେ ବୁଝୁଥିଲା, ଅଗ୍ନିଶର୍ମା କେମିତି ତା' ଦଳରେ ମିଶୁ । ଅଗ୍ନିଶର୍ମା ପହଞ୍ଚିବା ପରେ ସବୁ ଡାକୁମାନଙ୍କୁ ଡକାଇ ସର୍ଦ୍ଦାର ଚହ୍ଲେଇ ଦେଲା । ତା' ଆଦେଶରେ ଅଗ୍ନିଶର୍ମାକୁ ଭଲ ଦାମିକା ପୋଷାକ ଦିଆହେଲା ପିନ୍ଧିବାକୁ । ଏବେ ସେ ହାତ ହତିଆର ଚଳାଇବା ଶିଖିଲା । ସେ ତ ଆଗରୁ ହୃଷ୍ଟପୁଷ୍ଟ ଥିଲା, ତେଣୁ କୁସ୍ତି କସରତରେ ସେ ଅନ୍ୟମାନଙ୍କୁ ବି ଟପିଗଲା । ଧୀରେ ଧୀରେ ଏମିତି ବାତାବରଣରେ ରହି ଅଗ୍ନିଶର୍ମା ମଧ୍ୟ କଠୋର ପାଲଟିଗଲା । ପିତା-ମାତା, ଆଶ୍ରମ ଏ ସବୁ କଥା ତା' ମନରୁ ପୂରା ପାସୋରି ଗଲା । ଛୁରି ଭୂଷି ମଣିଷ ମାରିବାକୁ ସେ ଟିକିଏ ହେଲେ ଚିନ୍ତା କଲା ନାହିଁ । ବେଳେବେଳେ ଏକୁଟିଆ ପଥିକ ଦେଖି ସେ ଛୁରି ମାରିଲା ଏବଂ ତା' ପାଖେ ଥିବା ଧନରତ୍ନ ଲୁଟି ନେଇ ଆସିଲା ।

ଅଗ୍ନିଶର୍ମା ଏବେ ଏକ ପ୍ରସିଦ୍ଧ ଡାକୁ ପାଲଟିଗଲା । ମଣିଷଟେ ମାରିଦେବା ତା' ପକ୍ଷରେ ଏବେ ହସଖେଳର କଥା । ଲୋକଙ୍କୁ ଭୁଲେଇ ଲୁଟି କରିବାରେ ମଧ୍ୟ ସେ ସିଦ୍ଧହସ୍ତ । ଡାକୁ ସର୍ଦ୍ଦାର ତା'ର ଏ ପ୍ରକାର ପାରିବାପଣିଆ ଦେଖି ଆଶ୍ଚର୍ଯ୍ୟ ହେଉଥାଏ ।

ଅଗ୍ନିଶର୍ମା ବେଶ ବଦଳାଇ ଜଙ୍ଗଲର ଛକ ରାସ୍ତାମାନଙ୍କରେ ଜଗିରହେ । କେହି ପଥିକକୁ ଦେଖିଲେ, ସେ ତାକୁ ରାସ୍ତା ଦେଖାଇଦେବା ବାହାନାରେ ସାଥିରେ ଚାଲିବାକୁ ଆରମ୍ଭ କରେ । ଟିକିଏ ନିର୍ଜ୍ଜନ ଜାଗା ଦେଖିଲେ ତା' ବ୍ୟବହାର ଖୁବ୍ କଠୋର ହୋଇପଡ଼େ । ତା'ପରେ ତାକୁ ହତ୍ୟା କରେ, ତା' ଧନ ଲୁଟି ନେଇଆସେ ।

ଏମିତି ସେ ଅନେକ ଯାତ୍ରୀଙ୍କୁ ହତ୍ୟାକରି ବହୁ ଧନରତ୍ନ ଲୁଟିକଲା । ଏତେ ଧନରତ୍ନ ସେ ସଂଗ୍ରହ କରିବାରୁ ଡାକୁ ଦଳ ତାଙ୍କୁ 'ରତ୍ନାକର' ବୋଲି ଡାକିଲେ । ଅଗ୍ନି ଶର୍ମା ନାମ ବଦଳି ତା' ନାମ ଏବେ ରତ୍ନାକର ହେଲା ।

ଏଇ ଲୁଟି ଧନରତ୍ନରୁ ସେ ପିତା-ମାତାଙ୍କର ଚଳିବାପାଇଁ ସବୁବେଳେ ସୁବିଧା କରି ପଠାଏ । ନିଜେ ଆଡ଼୍ଡାସ୍ଥଳୀରେ ମଉଜମଜଲିସ୍ କରି ଚଳେ ।

ଦିନେ ଜଣେ ଗରିବ ବ୍ରାହ୍ମଣ ତୀର୍ଥ କରିବା ପାଇଁ ଯାଉଥିଲା । ସେତେବେଳକୁ ସେ ରାସ୍ତାରେ ରତ୍ନାକର ଜଗି ରହିଥାଏ । ବ୍ରାହ୍ମଣକୁ ଦେଖିବା ମାତ୍ରେ ସେ ପାଖକୁ ଆସି ରାସ୍ତା ଦେଖେଇ ଦେବାପାଇଁ କହିଲା । ଦୁହେଁ ଆଗପଛ ହୋଇ ଚାଲିଲେ । ନିର୍ଜ୍ଜନ ସ୍ଥାନ ହେଇଯିବାରୁ ସେ ନିଜର ଅସଲ ରୂପ ଦେଖାଇ ବୁଢ଼ା ବ୍ରାହ୍ମଣକୁ ଗୋଟେ ଗଛରେ ବାନ୍ଧିଦେଲା । ତା'ପରେ ତାଙ୍କୁ ଧନ ମାଗିଲା, ଗରିବ ବ୍ରାହ୍ମଣ ପାଖେ ଧନ ଅବା କାହିଁ ? ମାଗି ମାଗି ରତ୍ନାକର ଖୁବ୍ ରାଗିଗଲା ଓ ତାଙ୍କୁ ମାଡ଼ ଦେଲା । ମାଡ଼ ଖାଇ ବ୍ରାହ୍ମଣ ବେହୋସ ହୋଇଗଲା । ଅଳ୍ପ ସମୟ ପରେ ଚେତା ଆସିବାରୁ ସେ ତା' ପୁଅ ନାଁ ଧରି କାନ୍ଦିଲା, କିନ୍ତୁ ରତ୍ନାକର ମନରେ ତିଳେହେଲେ ଦୟା ଜାତ ହେଲା ନାହିଁ । ପୁଣି ତାଙ୍କୁ ପିଟିପିଟି ମାରିଦେଲା । ତା ଗଣ୍ଠିଲିଟି ଖୋଲି ଦେଖିଲା, କିଛି ନାହିଁ ।

ରତ୍ନାକର ଭାବିଲା, ତା' ପିତା-ମାତା ନିଶ୍ଚୟ ଏମିତି ତାଙ୍କୁ ମନେପକାଇ କାନ୍ଦୁଥିବେ । ଦିନେ ଯାଇ ପିତାମାତାଙ୍କୁ ଦେଖି ଆସିବାକୁ ତାର ମନହେଲା, କିନ୍ତୁ ଘରକୁ ଯିବାପାଇଁ

ଡାକୁ ସର୍ଦ୍ଦାର ପୂରାପୂରି ମନା କରିଦେଇଛି । ଘରକୁ ଗଲେ କାଳେ ତା' ପିତା-ମାତା ତାକୁ ଅଟକାଇ ରଖିବେ ବୋଲି ସର୍ଦ୍ଦାର ମନା କରିଥିଲା ।

ଏଥିପାଇଁ ରତ୍ନାକର ମନରେ ଦୁଃଖ ଥାଏ । ସେହି ସମୟରେ ସାତଜଣ ଋଷି କୌଣସି ଆଶ୍ରମକୁ ସେଇ ଜଙ୍ଗଲ ରାସ୍ତା ଦେଇ ଯାଉଥାନ୍ତି । ରତ୍ନାକର ସେମାନଙ୍କୁ ଦେଖି ଧନ ପାଇବା ଆଶାରେ ଖୁସି ହୋଇଗଲା । ସେମାନଙ୍କ ସଙ୍ଗରେ ମଧ୍ୟ ଅନେକ ଦୂର ଗଲା, ନିର୍ଜ୍ଜନ ସ୍ଥାନ ଦେଖି ରତ୍ନାକରର ରୂପ ଭୟଙ୍କର ହୋଇଗଲା । ସେ ଗର୍ଜ୍ଜନ କରି କହିଲା, "ମୁଁ ଡାକୁ, ତୁମକୁ ଲୁଟିକରି ହତ୍ୟା କରିବା ମୋର କାମ, ତେଣୁ ଯାହା କିଛି ତୁମ ପାଖେ ଅଛି ଶୀଘ୍ର ବାହାର କରିଦିଅ ।"

ଋଷିଗଣ ଭୟରେ ଥରିଉଠିଲେ । ତାକୁ ଅନେକ ବୁଝାଇ କହିଲେ ମଧ୍ୟ ସେ ଶୁଣିଲା ନାହିଁ । ତା'ର କେବଳ ଧନ ଦରକାର । ସମସ୍ତଙ୍କୁ କିଛୁକ ଛେଚିଲା । ସେ ମାଡ଼ରେ ସମସ୍ତେ ବେହୋସ୍ ହୋଇ ପଡ଼ିଗଲେ । ହୋସ୍ ଆସିବା ପରେ ଜଣେ ବୃଦ୍ଧ ଋଷି ରତ୍ନାକରକୁ ପଚାରିଲେ, "ପୁଅ । ତୁମ ବାପା-ମାଆ କେଉଁଠି ? ସେମାନେ କ'ଣ କରନ୍ତି । ତୁମେ କ'ଣ ତୁମ ଉପାର୍ଜ୍ଜନରେ ତାଙ୍କୁ ପାଳନ କରୁଛ ?"

ହଠାତ୍ ଏ ପ୍ରଶ୍ନ ଶୁଣି ରତ୍ନାକର ମନରେ ପିତା-ମାତାଙ୍କ କଥା ମନେପଡ଼ିଲା । ସେ ସବୁ ପ୍ରଶ୍ନର ଉତ୍ତର ଦେଲା । ତା'ପରେ ଭାବିଲା, ଏମାନଙ୍କୁ ସେମିତି ଛାଡ଼ିଦେଲେ ବିପଦ । କାରଣ ସେମାନେ ଯାଇ ପ୍ରଚାର କରିଦେଲେ ଡାକୁ ଦଳ ଉପରେ ବିପଦ ଆସିବ । ଏ ସ୍ଥାନଟା ବି ଆଉ ସୁରକ୍ଷିତ ରହିବ ନାହିଁ, ତେଣୁ

କୁରାଢ଼ୀରେ ସମସ୍ତଙ୍କୁ ହତ୍ୟା କରିବ ବୋଲି ସେ ଚିନ୍ତା କଲା । ଜଣେ ଋଷିଙ୍କୁ ମାରିବା ପାଇଁ ଆଗେଇବାରୁ ଋଷି କହିଲେ, "ପୁଅ ! ଆମକୁ ମାରିବା ପୂର୍ବରୁ ଆମର ଗୋଟିଏ ଇଚ୍ଛା ପୂରଣ କରିଦେଲେ ଆମେ ଖୁବ୍ ଶାନ୍ତିରେ ମରିବୁ । ତୁମେ ଯାଇ ତୁମ ପିତା-ମାତାଙ୍କୁ ପଚାରିଆସ ଯେ, ଲୋକଙ୍କୁ ହତ୍ୟା କରି ଏବଂ ସେମାନଙ୍କୁ ପ୍ରାଣରେ ଦୁଃଖ ଦେଇ ତୁମେ ଯେଉଁ ପାପ ଅର୍ଜ୍ଜନ କରୁଛ, ସେହି ପାପରେ ତୁମ ପରିବାରର ଲୋକେ ମଧ୍ୟ ଭାଗିଦାର ହେବେ ନା ଏକା ତୁମେ ସେ ପାପ ଭୋଗିବ ।"

ଋଷିଙ୍କ କଥା ରତ୍ନାକର ଶୁଣି ସ୍ତବ୍ଧ ପାଲଟିଗଲା । ସେ ପୁଣି ପିତାମାତାଙ୍କୁ ମନେ ପକାଇଲା । ସେ ଘରକୁ ଯାଇ ବୁଝି ଆସିବାକୁ ଠିକ୍ କଲା । ତେବେ ସେ ଫିରିବା ଭିତରେ ଏମାନେ ଯଦି ପଳାଇବେ ? ତେବେ ବଡ଼ ଖରାପ ହେବ, ତେଣୁ ଗୋଟିଏ ଗଛ ଦେହରେ ଏ ସାତ ଜଣଙ୍କୁ ବାନ୍ଧିଦେଇ ସେ ସିଧା ତା' ଘରକୁ ଗଲା ।

ଘରେ ପହଞ୍ଚିବାରୁ ବୃଦ୍ଧ ପିତା-ମାତା ଆନନ୍ଦରେ ଅଧୀର ହୋଇପଡ଼ିଲେ । ନିଜର ଭଲ ମନ୍ଦ ଆଉ କାର୍ଯ୍ୟକଳାପ ବିଷୟରେ କହିଲା । ଶେଷରେ କହିଲା, "ଆପଣମାନଙ୍କୁ ମୁଁ ଗୋଟିଏ କଥା ପଚାରିବାକୁ ଚାହୁଁଛି । ଆପଣ କହନ୍ତୁ, ମୁଁ ମୋର ଏ ଡକାୟତି କାମରେ ଯେତେ ପାପ ଅର୍ଜନ କରୁଛି, ସେ ପାପ ଫଳ ମୁଁ ଏକା ଭୋଗିବି ନା ଆପଣମାନେ ମଧ୍ୟ ଭାଗ ଗ୍ରହଣ କରିବେ ?"

ଏକଥା ଶୁଣି ପିତା-ମାତାଙ୍କ ମନରେ କ୍ରୋଧ ଜାତ ହେଲା । ସେ କହିଲେ, "ମୂର୍ଖ ! କେଉଁଠି କାହାର ପାପକୁ ଅନ୍ୟ କେହି

ଭୋଗ କରେ ? ଯିଏ ପାପ କରେ, ତାକୁ ହିଁ ତାହାର ଫଳ ଭୋଗିବାକୁ ହୋଇଥାଏ । ଆମେ କାହିଁକି ତୋ' ପାପରେ ଭାଗିଦାର ହେବୁ ?"

ଏକଥା ଶୁଣି ରତ୍ନାକର ମନରେ ଘୋର ଦୁଃଖ ଏବଂ ପଶ୍ଚାତ୍ତାପ ଜାତ ହେଲା । ସେ ଆଉ ମୁହୂର୍ତ୍ତେ ସୁଦ୍ଧା ସେଠାରେ ନ ରହି ଧାଇଁ ଆସିଲା ସପ୍ତର୍ଷିଙ୍କ ପାଖକୁ । ସଙ୍ଗେ ସଙ୍ଗେ ସେମାନଙ୍କ ବନ୍ଧନ ଖୋଲିଦେଇ ତାଙ୍କ ଗୋଡ଼ ତଳେ ପଡ଼ିଗଲା ଏବଂ କ୍ଷମା ମାଗିଲା । ଦୁଃଖ, ଅନୁଶୋଚନା ଏବଂ ଭୟରେ ତା' ଦେହ ଥରୁଥାଏ । ଉଃ···କେତେ ମଣିଷ ସେ ହତ୍ୟା ନ କରିଛି ! କେତେ ଧନରତ୍ନ ଲୁଟି ନ କରିଛି ! ଏତେ ପାପରୁ ସେ ମୁକ୍ତ ପାଇବ କେମିତି ?

ଋଷିମାନଙ୍କୁ ମୁକ୍ତିର ଉପାୟ ପଚାରିଲା । ସେମାନେ ନିଜ ଭିତରେ ଆଲୋଚନା କରି 'ରାମ ନାମ' ଜପ କରିବାକୁ କହିଲେ, କିନ୍ତୁ ଭୟଙ୍କର ପାପ କରିଥିବାରୁ ରତ୍ନାକର ପାଟିରେ 'ରାମ' ଶବ୍ଦ ଉଚ୍ଚାରିତ ହୋଇପାରିଲା ନାହିଁ । ରାମ ଶବ୍ଦର ଓଲଟା 'ମରା' ଜପ କରିବାକୁ କହି ଋଷିମାନେ ଚାଲିଗଲେ ।

ରତ୍ନାକର ସେଇଠି ବସି 'ମରା' 'ମରା' ଶବ୍ଦ ଜପ କରିବାରେ ଲାଗିଲା । ନିଜକୁ ସମ୍ପୂର୍ଣ୍ଣ ଭୁଲିଗଲା । ଖାଇବା ପିଇବା କଥା ତ ଛାଡ଼ । ଏମିତି ଦିନ ମାସ ବର୍ଷ ହୋଇ ଢେର ବର୍ଷ ବିତିଗଲା ।

ଢେର ବର୍ଷ ପରେ ସେହି ସପ୍ତର୍ଷି ପୁଣି ଏଇ ବାଟରେ ଫେରିଲେ । ରତ୍ନାକରର ଧ୍ୟାନ ଦେଖି ସେମାନେ ଚକିତ ହୋଇ

ରହିଁଲେ । ବେଶୀ ଆଶ୍ଚର୍ଯ୍ୟ ହେଲେ— ରତ୍ନାକରର ଦେହରେ ବଲ୍ମୀକ ( ଉଇ ହୁଙ୍କା ) ମାଡ଼ି ଯାଇଛି···ସେ ଉଇ ହୁଙ୍କାକୁ ଛଡ଼ାଇବା ପାଇଁ ମଧ୍ୟ ରତ୍ନାକରର ଲକ୍ଷ୍ୟ ନାହିଁ । ଋଷିମାନେ ବଲ୍ମୀକକୁ ଭାଙ୍ଗି ଉଇ ସବୁକୁ ଛଡ଼ାଇଦେଲେ । ରତ୍ନାକରର ଦେହକୁ ସଫା କରିଦେଲେ । ତା'ପରେ ତା' ନାମ ଦେଲେ ବାଲ୍ମୀକ । ତାକୁ ଆଶୀର୍ବାଦ ଦେଇ କହିଲେ, "ତୁମେ ଆଜିଠାରୁ ପବିତ୍ର ହୋଇଗଲ । ବର୍ତ୍ତମାନ ତୁମେ ଶ୍ରୀରାମଚନ୍ଦ୍ରଙ୍କ ଚରିତ୍ରକୁ ନେଇ ରାମାୟଣ ରଚନା କର ।

ତାପମୟ ଜୀବନରୁ ମୁକ୍ତି ଦେଇଥିବା ଋଷିମାନଙ୍କୁ ନିଜ ସାମନାରେ ଦେଖି ରତ୍ନାକର ଆନନ୍ଦରେ ଗଦ୍‌ଗଦ ହୋଇଗଲା । ବିଦ୍ୟାଶିକ୍ଷା କରିବାପାଇଁ ସେହି ଋଷିମାନଙ୍କୁ ଅନୁରୋଧ କଲା । ସପ୍ତର୍ଷି ଦସ୍ୟୁଙ୍କର ଅଧ୍ୟୟନର ବ୍ୟବସ୍ଥା କରିଦେଲେ । ମନ ଧ୍ୟାନ ଦେଇ ବିଦ୍ୟାଶିକ୍ଷା କରିବାରୁ ଅଳ୍ପଦିନ ପରେ ସେ ଜଣେ ବିଦ୍ୱାନ ହେଲେ । ଧୀରେ ଧୀରେ ଲୋକେ ତାଙ୍କୁ ମହର୍ଷି ବାଲ୍ମୀକ ନାମରେ ଡାକଲେ ।

ଏହାପରେ ମହର୍ଷି ବାଲ୍ମୀକ ତମସା ନଦୀ କୂଳରେ ଆଶ୍ରମଟିଏ ତିଆରି କରି ରହିଲେ । ତାଙ୍କଠାରୁ ଶିକ୍ଷା ଗ୍ରହଣ କରିବାକୁ କ୍ରମେ ଶିଷ୍ୟମାନେ ମଧ୍ୟ ଆସିଲେ । ସେହି ସମୟରେ ଅଯୋଧ୍ୟାରେ ରାଜା ଦଶରଥ ରାଜୁତି କରୁଥାନ୍ତି । ସେ ମହର୍ଷି ବାଲ୍ମୀକଙ୍କୁ ଖୁବ୍ ଆଦର ଏବଂ ସମ୍ମାନ ଦେଉଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀରାମଚନ୍ଦ୍ର ଅଯୋଧ୍ୟାର ରାଜା ହେଲେ । ସେ ମଧ୍ୟ ମହର୍ଷିଙ୍କୁ ବହୁତ ସମ୍ମାନ ଦେଇ ପୂଜା କରୁଥିଲେ ।

ମହର୍ଷି ବାଲ୍ମୀକି ରାମାୟଣ ରଚନା କରିବାକୁ ବାରମ୍ବାର ଚିନ୍ତା କରୁଥାନ୍ତି । କେମିତି ଆରମ୍ଭ କରିବେ କୌଣସି ଥଳକୂଳ ପାଉ ନ ଥାନ୍ତି । ହଠାତ୍ ଦିନେ ଗୋଟିଏ ଘଟଣା ଘଟିଲା । ନିଜ ଶିଷ୍ୟ ଭରଦ୍ୱାଜ ସହିତ ସେଦିନ ସେ ତମସାକୁ ଗାଧୋଇବା ପାଇଁ ଗଲେ । ପାଖରେ ଥିବା ଗଛ ଉପରେ କ୍ରୌଞ୍ଚ ପକ୍ଷୀ ଏବଂ ପକ୍ଷିଣୀ ଦୁଇଟି ବସି ଆନନ୍ଦରେ କାକଳି କରୁଥାନ୍ତି । ସେତିକି-ବେଳେ ଗୋଟିଏ ଶିକାରୀ କେଉଁଠୁ ଆସି ଶର ମାରିଲା । କ୍ରୌଞ୍ଚ ପକ୍ଷୀଟି ଶରବିଦ୍ଧ ହୋଇ ରକ୍ତ ସରସର ଅବସ୍ଥାରେ ତଳେ ପଡ଼ି ଛଟପଟ ହେଉଥାଏ । ନିଜ ସ୍ୱାମୀର ମୃତ୍ୟୁ ଦେଖି ପକ୍ଷିଣୀଟି ଦୁଃଖପୂର୍ଣ୍ଣ ସ୍ୱରରେ ଚିତ୍କାର କରି କାନ୍ଦିଲା । ଏହି ଦୁଃଖ ଏବଂ କରୁଣ ଦୃଶ୍ୟ ଦେଖି ମହର୍ଷି ବାଲ୍ମୀକିଙ୍କ ହୃଦୟ ଫାଟିପଡ଼ିଲା । ଦୟାରେ ବିଗଳିତ ହୋଇ ହଠାତ୍ ସେ ଶିକାରୀକୁ କହିଲେ—

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ ।
ଯତ୍ କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତମ୍ ।

ଅର୍ଥାତ୍—ହେ ଶିକାରୀ ! ତୁମକୁ କେବେହେଲେ ଶାନ୍ତି ମିଳିବ ନାହିଁ । କାରଣ ତୁମେ, ପ୍ରେମରେ ମଜ୍ଜି ରହିଥିବା ଏହି କ୍ରୌଞ୍ଚ ପକ୍ଷୀ ଦୁଇଟିରୁ ଗୋଟିକୁ ବିନା ଅପରାଧରେ ହତ୍ୟା କରିଦେଲ ।

ମହର୍ଷି ବାଲ୍ମୀକିଙ୍କ ମୁହଁରୁ ବାହାରିଥିବା ଏହି ଶ୍ଳୋକକୁ 'ଆଦିକବିତା' ରୂପେ ଧରି ଯାଇଥାଏ । ତେଣୁ ଲୋକେ ତାଙ୍କୁ 'ଆଦିକବି' ( ସର୍ବପ୍ରଥମ କବି ) କହିଥାନ୍ତି ।

ତା'ପରେ ସେ ଶ୍ରୀରାମଚନ୍ଦ୍ରଙ୍କ ଜୀବନର ପ୍ରତ୍ୟେକ ଘଟଣାକୁ ପୁଙ୍ଖାନୁପୁଙ୍ଖ ଚିତ୍ରାକରି ରାମାୟଣ ରଚନା କଲେ । ସେ ସମୁଦାୟ ଚବିଶ ହଜାର ଶ୍ଳୋକ ଲେଖିଲେ ।

ମହର୍ଷି ବାଲ୍ମୀକ ସତୀଶିରୋମଣି ସୀତାଙ୍କୁ ତାଙ୍କ ଆଶ୍ରମରେ ଆଶ୍ରୟ ଦେଇଥିଲେ । ସେହିଠାରେ ହିଁ ସୀତାଙ୍କର ଲବକୁଶ ପୁତ୍ର ଦୁଇଟି ଜନ୍ମ ହୋଇଥିଲେ ।

ରାମାୟଣ ରଚନା କରିବା ଫଳରେ ଚାରିଆଡ଼େ ମହର୍ଷି ବାଲ୍ମୀକଙ୍କର ସୁଖ୍ୟାତି ବଢ଼ିଗଲା । ବହୁ ମୁନି, ଋଷି ତାଙ୍କୁ ଦର୍ଶନ କରିବା ପାଇଁ ଆସିଲେ । ସେତେବେଳକୁ ତାଙ୍କ ଆଶ୍ରମରେ ଶିଷ୍ୟମାନଙ୍କର ସଂଖ୍ୟା ମଧ୍ୟ ବଢ଼ି ଯାଇଥିଲା । ସୀତା ଦେବୀଙ୍କୁ ପୁଣି ଶ୍ରୀରାମଚନ୍ଦ୍ର ଗ୍ରହଣ ନ କରିବାରୁ ମହର୍ଷି ନିଜେ ଯାଇ ତାଙ୍କ ପବିତ୍ର ଜୀବନର ପ୍ରମାଣ ଦେଇଥିଲେ । କିନ୍ତୁ ଶେଷରେ ସତୀ ସୀତା ବାଧ୍ୟ ହୋଇ ପାତାଳରେ ପ୍ରବେଶ କରିଥିଲେ । ଏସବୁ ଦେଖି ମହର୍ଷିଙ୍କ ପ୍ରାଣ ଦୁଃଖରେ ବ୍ୟାକୁଳ ହୋଇଥିଲା । ସେତେବେଳକୁ ସେ ବୃଦ୍ଧ । ଶିଷ୍ୟମାନଙ୍କୁ ଧର୍ମଶିକ୍ଷା ଦେଇ ରାମାୟଣର ପ୍ରଚାର କରିବା ପାଇଁ ସେ ଉପଦେଶ ଦେଉଥିଲେ । ଶେଷରେ ଦିନେ ସେ ଧ୍ୟାନ କରୁଥିବା ଅବସ୍ଥାରେ ହିଁ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା ।

ଏ ସୃଷ୍ଟି ରହିଥିବା ପର୍ଯ୍ୟନ୍ତ ମହର୍ଷି ବାଲ୍ମୀକ ଜଗତରେ ବଞ୍ଚି ରହିବେ । ତାଙ୍କ ରଚିତ ରାମାୟଣ ମହାକାବ୍ୟକୁ ଜଗତର ଅନ୍ୟ କୌଣସି ମହାକାବ୍ୟ ସହିତ ତୁଳନା କରାଯାଇ ନ ପାରେ । ଆଜି ମଧ୍ୟ ମହର୍ଷି ବାଲ୍ମୀକଙ୍କ ନାମ ସ୍ମରଣ କଲେ ତାଙ୍କ ପ୍ରତି ଶ୍ରଦ୍ଧାରେ ଆମ ଶିର ନଇଁ ଯାଏ ।

●

# ମହାବୀର ଜୈନ

ପ୍ରାଚୀନ ଯୁଗର କଥା । ସେତେବେଳେ କ୍ଷତ୍ରିୟକୁଣ୍ଡ ନାମରେ ଗୋଟିଏ ନଗର ଥିଲା । ସେଠାରେ ରାଜା ସିଦ୍ଧାର୍ଥ ରାଜୁତି କରୁଥାଆନ୍ତି । ମହାରାଣୀଙ୍କ ନାମ ତ୍ରିଶିଳା । ରାଜା ସିଦ୍ଧାର୍ଥ ପ୍ରଜାମାନଙ୍କର ଦୁଃଖ ସୁଖ ବୁଝି, ରାଜ୍ୟଶାସନ କରୁଥିଲେ । ତାଙ୍କ ରାଜ୍ୟ ଧନ ଧାନ୍ୟରେ ପୂର୍ଣ୍ଣଥିଲା । ଅପରାଧୀମାନଙ୍କୁ କଠୋର ଦଣ୍ଡ ଦେଇ ରାଜ୍ୟରେ ଶାନ୍ତି ସ୍ଥାପନ କରା ଯାଇଥିଲା ।

ଦିନେ ରାତିରେ ମହାରାଣୀ ତ୍ରିଶିଳା ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ଏମିତି ସ୍ୱପ୍ନ ସେ ଆଗରୁ କେବେ ଦେଖି ନ ଥିଲେ । ମହାରାଜଙ୍କୁ ଏ କଥା କହିଲେ । ମହାରାଜ ମଧ୍ୟ ଏ ସ୍ୱପ୍ନ କଥା ଶୁଣି ଚକିତ ହେଲେ । ସଙ୍ଗେ ସଙ୍ଗେ ପଣ୍ଡିତମାନଙ୍କୁ ଡକାଯାଇ ସ୍ୱପ୍ନ କଥା ବିଚାର ହେଲା ।

ପଣ୍ଡିତମାନେ କହିଲେ, "ମହାରାଣୀଙ୍କ ଗର୍ଭରୁ ଗୋଟିଏ ଲକ୍ଷଣବନ୍ତ ପୁତ୍ରଜାତ ହେବ । ସେ ଦିନେ ସମ୍ରାଟ ହେବ କିମ୍ବା

ଜଣେ ଶ୍ରେଷ୍ଠ ମହାପୁରୁଷ ରୂପେ ମଣିଷ ସମାଜର ମଙ୍ଗଳ କରିବ । ଏ ସ୍ୱପ୍ନ ଆପଣଙ୍କ ପାଇଁ ଏକ ଶୁଭ ସଙ୍କେତ ।"

କିଛି ଦିନ ପରେ ମହାରାଣୀଙ୍କ ଗର୍ଭରୁ ପୁତ୍ରଟିଏ ଜାତ ହେଲା । ସେ ଜନ୍ମହେବା ପରେ ରାଜପ୍ରାସାଦରେ ଆହୁରି ଶାନ୍ତି ବିରାଜମାନ କଲା । ରାଜାଙ୍କର ଧନ, ଐଶ୍ୱର୍ଯ୍ୟ ଆଦିରେ ମଧ୍ୟ ବୃଦ୍ଧି ଘଟିଲା । ରାଜ୍ୟରେ ପ୍ରଜାମାନେ ପୂର୍ବ ଅପେକ୍ଷା ଅଧିକ ଶାନ୍ତିରେ କାଳ କାଟିଲେ । ସବୁ ଦୃଷ୍ଟିରୁ ବୃଦ୍ଧି ପାଇବାରୁ ରାଜା ଖୁବ୍ ଆନନ୍ଦିତ । ତେଣୁ 'ଯଥା ନାମ ତଥା ଗୁଣ' ଅନୁସାରେ ପୁତ୍ରର ନାମ ଦେଲେ 'ବର୍ଦ୍ଧମାନ' ।

ରାଣୀ ଅନ୍ତଃପୁରରେ ସନ୍ତାନଟି ଖୁବ୍ ଅଲଅଲରେ ବଢ଼ିଲା । ତା'ର ଉଦ୍ଦୀପ୍ତ ଚେହେରା ଦେଖି ସମସ୍ତେ ଖୁସି ହେଉଥାନ୍ତି । କ୍ରମେ ବର୍ଦ୍ଧମାନ ଶିଶୁ ଅବସ୍ଥାରୁ କିଶୋର ଅବସ୍ଥାକୁ ଆସିଲେ । ଶୈଶବକାଳରୁ ତାଙ୍କର ଭବିଷ୍ୟତ ମଧ୍ୟ ବାରି ହୋଇ ପଡ଼ୁଥାଏ ।

ପିଲାଦିନରୁ ବର୍ଦ୍ଧମାନ ସାହସୀ ଓ ନିର୍ଭୀକ ଥିଲେ । କେବେ କେବେ ଅସମ୍ଭବ କାମକୁ କରିବା ପାଇଁ ମଧ୍ୟ ଡେଇଁ ପଡ଼ୁଥିଲେ । ତାଙ୍କର ଖେଳ ସାଥୀ ଥାଆନ୍ତି । ସାଙ୍ଗ ସାଥୀମାନେ ମଧ୍ୟ ତାଙ୍କ ବ୍ୟବହାରରେ ଖୁସି ହୁଅନ୍ତି ।

ଦିନେ ସେ ସାଥୀଙ୍କ ମେଳରେ ଖେଳୁଥା'ନ୍ତି । ହଠାତ୍ ଗୋଟାଏ ନାଗସାପ ବାହାରିଲା । ସବୁ ସାଥୀମାନେ ଭୟରେ ଚିତ୍କାର କରି ଏଣେ ତେଣେ ଧାଇଁ ଗଲେ । କିନ୍ତୁ ବର୍ଦ୍ଧମାନ ଦୃଢ଼ ଭାବେ ସେଇଠି ଠିଆ ହୋଇଥାଆନ୍ତି । ସେ ଆଦୌ ଭୟ

କଲେ ନାହିଁ । ସେ ଆଶ୍ଚର୍ଯ୍ୟଜନକ ଭାବେ ତା’ ବେକକୁ ଜୋରରେ ଧରି ବୁଲାଇ ବୁଲାଇ ଖୁବ୍ ଦୂରକୁ ଫିଙ୍ଗି ଦେଲେ । ଏ କଥା ଦେଖି ସମସ୍ତେ ଚକିତ ହୋଇ ଯାଇଥିଲେ ।

ରାଜପ୍ରାସାଦ ଭିତରେ ବର୍ଦ୍ଧମାନଙ୍କର ପାଠ ପଢ଼ିବା ପାଇଁ ଗୁରୁ ନିଯୁକ୍ତ ହୋଇଥିଲେ । ବର୍ଦ୍ଧମାନ, ଗୁରୁଙ୍କୁ ଖୁବ୍ ସମ୍ମାନ ଦେଇ ଭକ୍ତି କରୁଥିଲେ । ସେ ଯାହା କିଛି ପଢ଼ାଉ ଥିଲେ, ତାହା ସଙ୍ଗେ ସଙ୍ଗେ ମନେ ରଖି ଉତ୍ତର ଦେଉଥିଲେ । ଆଉ କେତେ ପାଠ ତାଙ୍କୁ ଆସୁଥିଲା । ଗୁରୁ, ରାଜା ସିଦ୍ଧାର୍ଥଙ୍କୁ କହନ୍ତି, "ରାଜନ୍ ! କ’ଣ ମୁଁ ପଢ଼େଇବି ? ତାଙ୍କୁ ତ ସବୁ ଆସୁଛି । ଯାହା ପଚାରିଲେ ନିର୍ଭୁଲ ଉତ୍ତର ଦେଉଛନ୍ତି । ଏବେ ତାଙ୍କୁ ଉଚ୍ଚ ଧରଣର ଶିକ୍ଷା ଆବଶ୍ୟକ ।"

ସାଧୁ ସନ୍ଥଙ୍କ ବିଷୟରେ ଶୁଣି ବର୍ଦ୍ଧମାନଙ୍କ ମନରେ ସେମାନଙ୍କ ପରି ହେବାପାଇଁ ଆଗ୍ରହ ଜନ୍ମେ । ବେଦ, ଉପନିଷଦ ଏବଂ ପୁରାଣ-ଉପପୁରାଣ ଆଦି ପଢ଼ନ୍ତି । ସଂସ୍କୃତ ଭାଷା ପ୍ରତି ତାଙ୍କର ଖୁବ୍ ମମତା । ପଢ଼ି ପଢ଼ି ଯାହା ବୁଝି ନ ପାରନ୍ତି, ଗୁରୁଙ୍କୁ ତାହା ପଚାରନ୍ତି । ଗୁରୁଜନମାନଙ୍କୁ ମଧ୍ୟ ଭକ୍ତି କରନ୍ତି । ଗର୍ବ, ଅହଙ୍କାର ଆଦିରୁ ସେ ଖୁବ୍ ଦୂରରେ ଥାଆନ୍ତି । ସାଧୁ ଜୀବନ ଯାପନ ପ୍ରତି କ୍ରମେ ତାଙ୍କର ଆଗ୍ରହ ବୃଦ୍ଧି ପାଇଲା । କିନ୍ତୁ ପିତା ମାତା ଏ କଥା ଶୁଣିଲେ କାଳେ ମନ ଖରାପ କରିବେ ଭାବି ସେ ପ୍ରଶ୍ନ ଉଠାଇଲେ ନାହିଁ ।

ଦିନ ଗଡ଼ି ଚାଲିଲା । କ୍ରମେ ଯୁବକ ବର୍ଦ୍ଧମାନଙ୍କର ବିବାହ ସମୟ ଆସିଲା । ମହାରାଜ ଶୁଭତିଥି ଦେଖି ତାଙ୍କର ବିବାହ କରାଇ ଦେଲେ । ବର୍ଦ୍ଧମାନଙ୍କ ସ୍ତ୍ରୀଙ୍କ ନାମ ଯଶୋଦା । ସେ

ଅତୀବ ରୂପବତୀ ଥିଲେ । ରାଜପ୍ରାସାଦର ସୁଖଶାନ୍ତିରେ ଆଉରି ବୃଦ୍ଧି ଘଟିଲା । କିଛିଦିନ ପରେ ଗୋଟିଏ କନ୍ୟା ମଧ୍ଯ ଜନ୍ମ ହେଲା । ତା' ନାମ ଦେଲେ ପ୍ରିୟଦର୍ଶନା ।

ସୁଖଶାନ୍ତିରେ ପୁଣି କିଛିଦିନ କଟିଲା । ରାଜା ସିଦ୍ଧାର୍ଥ ଓ ମହାରାଣୀ ତ୍ରିଶିଳା ପ୍ରାଣତ୍ୟାଗ କରିବାରୁ ବର୍ଦ୍ଧମାନଙ୍କ ପ୍ରାଣରେ ଘୋର ଦୁଃଖ ଜାତ ହେଲା । ସବୁ କିଛି ତାଙ୍କୁ ବିଷତୁଲ୍ୟ ମନେ ହେଲା । ରାଜସିଂହାସନ ପ୍ରତି ତାଙ୍କ ମନରେ ଟିକିଏହେଲେ ଲୋଭ ନ ଥାଏ । ତାଙ୍କ ସାନଭାଇଙ୍କ ନାମ ନନ୍ଦ ବର୍ଦ୍ଧନ । ନନ୍ଦ ବର୍ଦ୍ଧନ ବଡ଼ ଭାଇଙ୍କୁ ଅନୁରୋଧ କରିବାରୁ ବାଧ୍ୟହୋଇ ବର୍ଦ୍ଧମାନ ସିଂହାସନରେ ବସିଲେ । କୌଣସି ପ୍ରକାରେ ସେ ଦୁଇବର୍ଷ ପର୍ଯ୍ୟନ୍ତ ପ୍ରଜା ପାଳନ କଲେ ।

ସାଧୁ ସନ୍ଥଙ୍କ ଜୀବନ ପ୍ରତି ସେ ଆଗରୁ ପ୍ରଭାବିତ ହୋଇଥିଲେ । ରାଜପ୍ରାସାଦ, ରାଜସିଂହାସନ ଆଦି ତାଙ୍କୁ ଆଉ ଭଲ ଲାଗିଲା ନାହିଁ । ଶେଷରେ ଭାଇ ହାତରେ ରାଜ୍ୟର ଭାର ଅର୍ପଣ କରି ଘରଦ୍ୱାର, ସ୍ତ୍ରୀ, କନ୍ୟା, ବନ୍ଧୁବାନ୍ଧବ ସମସ୍ତଙ୍କୁ ଛାଡ଼ି ସେ ଚାଲିଗଲେ । କୌଣସି ଆକର୍ଷଣ ତାଙ୍କୁ ପଛକୁ ଟାଣି ପାରିଲା ନାହିଁ ।

ବାଟରେ ଗୋଟିଏ ଗରିବ ଲୋକଙ୍କୁ ସେ ଭେଟିଲେ । ଦେହରେ ତା'ର ଲୁଗାପଟା ନାହିଁ । ନ ଖାଇ ନ ପିଇ ସେ ବିକଳରେ କିଛି ସାହାଯ୍ୟ ମାଗୁଥାଏ । ବର୍ଦ୍ଧମାନ ସଙ୍ଗେ ସଙ୍ଗେ ନିଜ ଲୁଗାରୁ ଅଧାଚିରି ତାଙ୍କୁ ଦେଇଦେଲେ । ଏମିତି ଯାଉ ଯାଉ ସେ ନାଳନ୍ଦ ନାମକ ସ୍ଥାନରେ ପହଞ୍ଚିଲେ ।

ନାଳନ୍ଦର ବୃକ୍ଷଆଡ଼େ ସୁନ୍ଦର ପ୍ରକୃତିର ଦୃଶ୍ୟ ବର୍ଦ୍ଧମାନଙ୍କ ପ୍ରାଣକୁ ଶାନ୍ତି ପ୍ରଦାନ କଲା । ସେଠାରେ ଜଣେ ସାଧୁଙ୍କ ସହିତ ତାଙ୍କର ଦେଖାହେଲା, କିନ୍ତୁ ଯେଉଁ ସାଧୁ ତାଙ୍କପ୍ରତି ଖୁବ୍ କଠୋର ବ୍ୟବହାର କଲା । ସେ ଭୟଙ୍କର ଉତ୍ତେଜିତ ହୋଇ ବର୍ଦ୍ଧମାନଙ୍କୁ ଗାଳିଦେଲା ଏବଂ ପରିହାସ କଲା, କିନ୍ତୁ ସେ ଗାଳିଦେଉଥାଏ, ବର୍ଦ୍ଧମାନ ସେ ସବୁ ହସି ହସି ଗ୍ରହଣ କରୁଥାନ୍ତି । ଶେଷରେ ସାଧୁ ହାରମାନି ଚୁପ୍ ରହିଲା ।

ବର୍ଦ୍ଧମାନ ଅରଣ୍ୟର ଶାନ୍ତ ପରିବେଶ ମଧ୍ୟରେ ଧ୍ୟାନ କରିବାକୁ ଲାଗିଲେ । ସେହି ଧ୍ୟାନ ତାଙ୍କୁ ଆହୁରି ଶାନ୍ତି ପ୍ରଦାନ କଲା । ଦିନେ ସେ ଧ୍ୟାନରେ ବସିଥାନ୍ତି, ସେତିକିବେଳେ ଜଣେ କୃଷକ ଖୁବ୍ ତରବର ହୋଇ ଆସି ଧ୍ୟାନମଗ୍ନ ବର୍ଦ୍ଧମାନଙ୍କୁ କହିଲା, "ମୋର ଟିକିଏ ଡାଞ୍ଜଲ ଯିବାର ଅଛି । ଖୁବ୍ ଜରୁରୀ କାମ । ମୁଁ ଫେରିଆସିବାଯାଏ ତୁମେ ମୋ ବଳଦକୁ ଦେଖୁଥାଅ । କୁଆଡ଼େ ଚାଲିଗଲେ ଅଡୁଆ ହେବ, ଏତିକି କହି ସେ କୃଷକ ଚାଲିଗଲା ।

କିନ୍ତୁ ବର୍ଦ୍ଧମାନ ଧ୍ୟାନରେ ମଗ୍ନି ରହିଥିଲେ । କୃଷକର କଥା କହୁହେଲେ ସେ ଶୁଣିପାରିଲେ ନାହିଁ । ସେ କାହାକୁ କହି ଧାଇଁ ଚାଲିଗଲା ତାହା ଭଗବାନ ଜାଣନ୍ତି । ସେ ପୁଣି କିଛି ସମୟ ପରେ ଫେରିଲା । ବଳଦମାନଙ୍କର ଠିକଣା ନ ଥାଏ । କିଏ କୁଆଡ଼େ ପଳେଇଲେଣି । କୃଷକର ମନରେ ଖୁବ୍ କ୍ରୋଧ ଜାତ ହେଲା । ବର୍ଦ୍ଧମାନଙ୍କୁ ସେ ବହୁତ ଥର ପଚାରିଲା, କିନ୍ତୁ ସେ ତ ଧ୍ୟାନରେ, କ'ଣ ବା ଉତ୍ତର ଦେବେ ? ଶେଷରେ ଆହୁରି ରାଗିଯାଇ ସେ କୃଷକ ତାଙ୍କ କାନରେ ଦୁଇଖଣ୍ଡ କାଠି ଭର୍ତ୍ତି

କରିଦେଲା, କିନ୍ତୁ ବର୍ଦ୍ଧମାନ ଅଚଳ ଅଟଳ । ତାଙ୍କୁ ଅନେକ ଏଣୁତେଣୁ ଗାଳିଗୁଲଜ ମଧ୍ୟ କଲା ।

ପୁଣି କେତେକ ପରଶ୍ରୀକାତର ଲୋକ ମଧ୍ୟ ତାଙ୍କୁ ହଇରାଣରେ ପକାଇଲେ । ପ୍ରତ୍ୟେକ କ୍ଷେତ୍ରରେ ସେ ସହିବାଟାକୁ ପସନ୍ଦ କରୁଥିଲେ । ବୀରମାନଙ୍କ ପରି ସେ ଦୃଢ ଏବଂ ଅଟଳ ରହୁଥିଲେ । ମାଡ ମାରିଲେ ବି ସେ ଉଁ କି ଚୁଁ କରୁ ନ ଥିଲେ । ତାଙ୍କର ବୀରପଣିଆଁ, ସାହସ ଏବଂ ସହିଷ୍ଣୁତା ଦେଖି ଲୋକେ ତାଙ୍କୁ ମହାବୀର ବୋଲି କହିଲେ । ଅବିଚଳିତ ଭାବେ ଧ୍ୟାନ କରିବା ତାଙ୍କର ଅଭ୍ୟାସ ହୋଇଗଲା । ଶେଷରେ ତାଙ୍କୁ ଆତ୍ମ-ସାକ୍ଷାତ୍କାର ହୋଇଥିଲା । ସେତେବେଳକୁ ବୁଦ୍ଧି ତାଙ୍କର ପ୍ରଖର । ପ୍ରତିଭାର ଝଲକ ତାଙ୍କର ତେଜୋଦ୍ଦୀପ୍ତ ମୁଖମଣ୍ଡଳରୁ ବାରିହୋଇ ପଡୁଥାଏ ।

ମହାବୀର ନିଜର କେତେକ ସ୍ୱତନ୍ତ୍ର ବିଚାରଧାରାକୁ ପ୍ରଚାର କରିବାପାଇଁ ଚାହିଁଲେ । ତିରିଶ ବର୍ଷ କାଳ ଦେଶର ବିଭିନ୍ନ ସ୍ଥାନକୁ ଯାଇ ସେ ନିଜ ଚିନ୍ତାଧାରାକୁ ପ୍ରଚାର କଲେ । ସେ କହୁଥିଲେ, "କୌଣସି ଜୀବ ପ୍ରତି ହିଂସା କରିବା ଉଚିତ ନୁହେଁ । ମଣିଷ-ମଣିଷ ଭିତରେ ଭେଦଭାବ ରଖନାହିଁ ।"

ତାଙ୍କର ମୂଲ୍ୟବାନ ଉପଦେଶକୁ ବହୁତ ଲୋକ ଆଗ୍ରହର ସହିତ ପସନ୍ଦ କରି ଗ୍ରହଣ କଲେ । ଏହା ଫଳରେ ଜୈନ ସମ୍ପ୍ରଦାୟ ପ୍ରତି ଲୋକେ ଅଧିକ ଆକୃଷ୍ଟ ହେଲେ । ମହାବୀର, ଜୈନମାନଙ୍କର ଶେଷ ଚବିଶ ତୀର୍ଥଙ୍କର ଅଟନ୍ତି । ତୀର୍ଥଙ୍କରମାନଙ୍କୁ ଭଗବାନ ରୂପେ ମାନି ଜୈନମାନେ ପୂଜା କରନ୍ତି ।

ଗୌତମ ବୁଦ୍ଧଙ୍କ ଆବିର୍ଭାବ ପୂର୍ବରୁ ମହାବୀର ଜନ୍ମଗ୍ରହଣ କରି ଦେଶରେ ଜୈନଧର୍ମର ଶ୍ରେଷ୍ଠ ଆଦର୍ଶ ପ୍ରଚାର କରି ଯାଇଥିଲେ । ଦେଶ ଓ ଜାତି ମଧ୍ୟ ଉଚ୍ଚନୀଚ ଭେଦଭାବ ଓ ଜାତିଭେଦକୁ ଦୂର କରିବାପାଇଁ ମହାବୀର ପ୍ରଚୁର ଉଦ୍ୟମ କରିଥିଲେ । ସେ ଉପଦେଶ ଦେଉଥିଲେ, "ଜନ୍ମରୁ କେହି ଶ୍ରେଷ୍ଠ ବା ବଡ଼ ହୁଏ ନାହିଁ । କର୍ମଦ୍ୱାରା ହିଁ ମଣିଷ ଶ୍ରେଷ୍ଠ କିମ୍ବା ବଡ଼ ହୋଇଥାଏ । ଧନରତ୍ନ ମଣିଷକୁ ବଡ଼ କରେ ନାହିଁ । ଯେ ସତ୍‌କର୍ମ କରେ ଭଗବାନ ତାକୁ ଆଶୀର୍ବାଦ କରନ୍ତି । ପ୍ରାଣୀର ଅମଙ୍ଗଳ ଚିନ୍ତା କରିବା ପାପ । ଈଶ୍ୱରଙ୍କ ପାଖେ ସମସ୍ତେ ସମାନ । ସତ୍‌କର୍ମୀ ଲୋକ ଉତ୍ତମ । ଦୁଷ୍କର୍ମୀ ଲୋକ ନୀଚ ଏବଂ ହୀନ । ଅହିଂସା ପରମ ଧର୍ମ ।"



# ଭକ୍ତ-ଶିରୋମଣି ସୁର ଦାସ

ଭକ୍ତ ସୁର ଦାସ ନିଜର କାବ୍ୟମାଧୂର୍ଯ୍ୟ ଦ୍ୱାରା ଶ୍ରୀକୃଷ୍ଣଙ୍କ ନିର୍ମଳ ଭକ୍ତିକୁ ଭାରତୀୟ ଜନ-ମାନସରେ ଖେଳାଇ ଦେଇଛନ୍ତି । ତାଙ୍କ ରଚିତ ସମ୍ପୂର୍ଣ୍ଣ 'ସୁରସାଗର' ଶ୍ରୀକୃଷ୍ଣଙ୍କ ଲୀଳାମାଧୂର୍ଯ୍ୟରେ ପରିପୂର୍ଣ୍ଣ । ସୁର ଦାସ ଜୀବନକାଳରେ ବାଦଶାହ ଆକବର, ଦିଲ୍ଲୀ ସିଂହାସନରେ ଆସୀନ ହୋଇଥିଲେ ।

ସମ୍ବତ ୧୫୩୫, ବୈଶାଖ ମାସ ଶୁକ୍ଳ ପଞ୍ଚମୀ ତିଥିରେ ମହାତ୍ମା ସୁର ଦାସ, ଦିଲ୍ଲୀ ନିକଟବର୍ତ୍ତୀ ସିହ୍ରି ଗ୍ରାମରେ ଏକ ସାରସ୍ୱତ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଜନ୍ମରୁ ହିଁ ଅନ୍ଧ, ତେଣୁ ତାଙ୍କ ଲାଳନପାଳନ ପ୍ରତି ପିତା ଅଧିକ ଦୃଷ୍ଟି ଦେଇ ନ ଥିଲେ । ପରିବାରର ଲୋକେ ମଧ୍ୟ ତାଙ୍କଠାରୁ ଦୂରେଇ ରହୁଥିଲେ ।

ସାମାନ୍ୟ ବଡ଼ ହେବା ପରେ ସୁର ଦାସଙ୍କ ମନ ମଧ୍ୟ ଘରେ ଲାଗିଲା ନାହିଁ, ତେଣୁ ନିଜ ଜନ୍ମସ୍ଥାନ ଠାରୁ ଚାରି କୋଶ ଦୂର ଏକ ପୁଷ୍କରିଣୀ କୂଳରେ ଥିବା ପିପ୍ପଳୀ ଗଛ ମୂଳେ ରହିଲେ । ସେଠାରେ ବସି ସେ ଯା' ଆସ କରୁଥିବା

ଲୋକଙ୍କର ଭାଗ୍ୟ କଥା କହୁଥିଲେ । ହଜିଯାଇଥିବା ଜିନିଷ କଥା ସେ ଠିକ୍ ଠିକ୍ କହୁଥିଲେ ଓ ତାହା ମିଳିଯାଉଥିଲା ।

ଧୀରେ ଧୀରେ ତାଙ୍କର ଖ୍ୟାତି ବଢ଼ିଲା । ଦୂର ଗାଁରୁ ମଧ୍ୟ ଲୋକେ ତାଙ୍କ କଥା ଶୁଣି ସେଠାକୁ ଆସିଲେ । ଦିନେ ତାଙ୍କ ମନରେ ଖୁବ୍ ପଶ୍ଚାତ୍ତାପ ହେଲା ।

ସେ ଭାବିଲେ ଯେ, ମୁଁ ତ ଭଗବାନଙ୍କ ଭଜନ କରିବା ପାଇଁ ଘରୁ ବାହାରି ଆସିଥିଲି, କିନ୍ତୁ ଏଠି ମାୟାର ହୀନ ଛନ୍ଦରେ ପଡ଼ିଗଲି ।

ଏହା ଭାବି ତାଙ୍କ ମନରେ ବୈରାଗ୍ୟ ସୃଷ୍ଟି ହେଲା । ସେ ମଥୁରା ଯିବା ଉଦ୍ଦେଶ୍ୟରେ ବାହାରିଲେ । ମଥୁରାଠାରୁ ସେ ରେଣୁକା (ରୁନକତା) କ୍ଷେତ୍ରକୁ ଯାଇ ଭଜନ କଲେ । ସେଠାରେ ଖୁବ୍ ଜନଗହଳି ଥିବାରୁ ତାଙ୍କୁ ଭଲ ଲାଗିଲା ନାହିଁ । ସେଥିରେ ସେ ବିଚଳିତ ହୋଇ ଯମୁନା ନଦୀ କୂଳରେ ଥିବା ଗଉଘାଟକୁ ଆସି ଭଗବତ ଭକ୍ତି ସାଧନାରେ ବୁଡ଼ି ରହିଲେ ।

ଗଉଘାଟଠାରେ ଥିବା ସମୟରେ ସେ ଜଣେ ଭଲ ସଙ୍ଗୀତଜ୍ଞ ଏବଂ ମହାତ୍ମାରୂପେ ପ୍ରସିଦ୍ଧି ଅର୍ଜନ କଲେ । ତାଙ୍କର ଶିଷ୍ୟ ହେବାପାଇଁ ଅନେକ ଲୋକ ସେଠାରେ ତୁଣ୍ଡ ହେଲେ । ଅନ୍ଧ ହେଲେ ସୁଦ୍ଧା ତାଙ୍କର ସାଧନା ଏବଂ ଭଗବତ୍ ପ୍ରୀତି ଦେଖି ଲୋକେ ଆଶ୍ଚର୍ଯ୍ୟଚକିତ ହେଉଥିଲେ ।

ସେହି ସମୟରେ ମହାପ୍ରଭୁ ବଲ୍ଲଭାଚାର୍ଯ୍ୟ ବିଜୟନଗରଠାରେ ମାୟାବାଦୀ ବେଦାନ୍ତମାନଙ୍କୁ ପରାଜିତ କରି ଅଡେଲ୍ ଠାରୁ ବ୍ରଜକୁ ଯାଉଥାନ୍ତି । ଗଉଘାଟଠାରେ ଅସ୍ଥାୟୀରୂପେ ବିଶ୍ରାମ କରିବାପାଇଁ ସେ ଅଟକିଗଲେ । ସୁର ଦାସ ତାଙ୍କ ସହିତ ସାକ୍ଷାତ କଲେ ।

ବଲ୍ଲଭାଚାର୍ଯ୍ୟଙ୍କ ପ୍ରେରଣା ଫଳରେ ସୁର ଦାସ, ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା ଗାନ କଲେ । ଏହି ଲୀଳା ଗାନ ସେ ନିଜେ ରଚନା କରିଥିଲେ । ସେ ଦୀକ୍ଷିତ ହୋଇ ବଲ୍ଲଭାଚାର୍ଯ୍ୟଙ୍କ ସଙ୍ଗରେ ଗୋକୁଳକୁ ଚାଲିଆସିଲେ । ସେଠାରେ ସେ ଶ୍ରୀନାଥଙ୍କ ସେବାରେ ଲାଗିଗଲେ । ଏହାପରି ସେ ନିଜର ସମ୍ପୂର୍ଣ୍ଣ ଜୀବନ ଶ୍ରୀନାଥଙ୍କ ପାଦ ତଳେ ସମର୍ପି ଦେଇଥିଲେ । ପ୍ରତିଦିନ ସେ ଭଜନ-କୀର୍ତ୍ତନ ଦ୍ୱାରା ତାଙ୍କୁ ପୂଜା କଲେ । ସେ ସାହିତ୍ୟ ଜଗତକୁ ତଥା ଭକ୍ତଗଣଙ୍କୁ 'ସୁରସାଗର' ରୂପକ ଏକ ଅମୂଲ୍ୟରତ୍ନ ଦେଇଯାଇଛନ୍ତି ।

ଗୋକୁଳଠାରୁ ଗୋବର୍ଦ୍ଧନ ଆସିବାପରେ ସୁର ଦାସ, ଚନ୍ଦ୍ରସରୋବର ନିକଟସ୍ଥ ପରାସୋଲିଠାରେ ରହିଲେ । ସେ ପ୍ରତିଦିନ ଶ୍ରୀନାଥଙ୍କୁ ସତେଯେମିତି ସେଠାରେ ଦର୍ଶନ କରି ପାରୁଥିଲେ । ଶ୍ରୀବଲ୍ଲଭାଚାର୍ଯ୍ୟ ଗୋଲକ ଧାମକୁ ଗମନ କରିବା ପରେ ଶ୍ରୀବିଠ୍‌ଠଳ ନାଥ ତାଙ୍କ ପ୍ରତି କୃପାଦୃଷ୍ଟି ଦେଇଥିଲେ । ସେ ସୁର ଦାସଙ୍କୁ ଅଷ୍ଟଛାପ କବିମାନଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଦେଲେ ।

ସମ୍ବତ୍ ୧୬୪୦ ବେଳକୁ ପ୍ରାପ୍ତ ସୁର ଦାସ ପରାସୋଲିଠାରେ ଇହଲୀଳା ସାଙ୍ଗ କରିଥିଲେ । ଦେହାବସାନ ପୂର୍ବରୁ ତାଙ୍କ ଦେହ ହଠାତ୍ ଦୁର୍ବଳ ହୋଇପଡ଼ିଲା । ସେ ଶ୍ରୀନାଥଙ୍କ ମଙ୍ଗଳଆରତି ଦର୍ଶନ କରି ପରାସୋଲି ଆସିଲେ । କୁମ୍ଭନ ଦାସ, ଗୋବିନ୍ଦ ଦାସ ତଥା ଗୋସାଇଁ ବିଠ୍‌ଠଳ ଦାସଙ୍କ ସମ୍ମୁଖରେ ହିଁ ତାଙ୍କ ପ୍ରାଣପକ୍ଷୀ ଉଡ଼ି ଚାଲିଗଲା । ସୁର ଦାସ ପରମ ଭଗବଦ୍ ରସିକ ଥିଲେ ।

ସୁର ଦାସ, ମହାପ୍ରଭୁ ବଲ୍ଲଭାଚାର୍ଯ୍ୟଙ୍କ ପ୍ରଦର୍ଶିତ ପୁଷ୍ଟି ମାର୍ଗରେ ଗମନ କରି ଜୀବନସାରା ଭଗବାନ କୃଷ୍ଣଙ୍କ ଲୀଳା ଗାନ କରିଥିଲେ । ସେ ଭଗବାନଙ୍କ ବାଳ ରୂପ ବର୍ଣ୍ଣନାରେ, ମଧ୍ୟଯୁଗୀୟ ସମସ୍ତ କବି ଓ ଭକ୍ତମାନଙ୍କ ମଧ୍ୟରେ ଶ୍ରେଷ୍ଠ ତଥା ଅଦ୍ୱିତୀୟ ଥିଲେ । ସେ ନିଜର ରଚନା ସମୂହରେ ସ୍ପଷ୍ଟ କରିଦେଇଥିଲେ ଯେ, ଭଗବାନଙ୍କ ନିକଟରେ ନିଜକୁ ସମର୍ପିଦେଲେ ଯାଇ ତାଙ୍କ କୃପାଲାଭ କରିବା ସମ୍ଭବ ଏବଂ ଜୀବାତ୍ମା ପ୍ରକୃତ ଶାନ୍ତି ପାଇ-ପାରିବ ।

ସୁର ଦାସଙ୍କ ସମ୍ବନ୍ଧରେ ବହୁ ଆକର୍ଷଣୀୟ ପ୍ରସଙ୍ଗ ରହିଛି । ଶ୍ରୀବଲ୍ଲଭାଚାର୍ଯ୍ୟଙ୍କ ଦ୍ୱାରା ଦୀକ୍ଷିତ ହେବା ପ୍ରସଙ୍ଗ ଖୁବ୍ ସରସ ଏବଂ ଭାବପୂର୍ଣ୍ଣ । ମହାପ୍ରଭୁ ବଲ୍ଲଭାଚାର୍ଯ୍ୟ ଅଡେଲଠାରୁ ବ୍ରଜକୁ ଯାଉଥାନ୍ତି । ସେ ଯମୁନା କୂଳରେ ଗଉଘାଟଠାରେ ଅଟକିଲେ । ସେଠାରେ ସୁର ଦାସ କୁଡ଼ିଆଟିଏ ତିଆରି କରି ରହୁଥାନ୍ତି । ତାଙ୍କର ଅନେକ ଶିଷ୍ୟ ଥିଲେ । ଭଗବାନଙ୍କ ବିଷୟରେ ସେ ଅନେକଗୁଡ଼ିଏ ପଦ ରଚନାକରି ତାକୁ ସୁଲଳିତ କଣ୍ଠରେ ବୋଲନ୍ତି । ବଲ୍ଲଭାଚାର୍ଯ୍ୟଙ୍କ ଆସିବା କଥା ଶୁଣି ସେ ତାଙ୍କୁ ସାକ୍ଷାତ କରିବାପାଇଁ ଗଲେ । ସେ ଆଚାର୍ଯ୍ୟଙ୍କୁ ଦର୍ଶନ କଲେ ଏବଂ ବିନୟରେ କେତେକ ପଦ ଗାନକରି ଶୁଣାଇଲେ ।

ବଲ୍ଲଭାଚାର୍ଯ୍ୟ କହିଲେ, ଏମିତି ଅନ୍ୟ ପଦସବୁ ଘୋଷି ଗାନ କରିଦେଲେ ଯେ ସଂସାର ରୂପକ ସାଗରରୁ ତରିଯିବ, ତା' ନୁହେଁ । ଭଗବାନ ଶ୍ରୀକୃଷ୍ଣଙ୍କ ମଧୁର ଲୀଳା ସବୁକୁ ବର୍ଣ୍ଣନା କଲେ ବରଂ ପରମାନନ୍ଦ ପ୍ରାପ୍ତ ହେବ । ତାଙ୍କର ଲୀଳା-ଯଶ ବର୍ଣ୍ଣନା କରି ନିଜେ ପଦ୍ୟ ରଚନା କର । ସୁର ଦାସ ଏହା

ଶୁଣି ଅତି ବିନମ୍ର ହୋଇ କହିଲେ, "କୃପାନାଥ ! ଭଗବାନଙ୍କ ଲୀଳା ବର୍ଣ୍ଣନା କରି ଗାନ କରିବାପାଇଁ ମୋର ଏତେ ଶକ୍ତି କାହିଁ ?

ଶ୍ରୀବଲ୍ଲଭାଚାର୍ଯ୍ୟ ତାଙ୍କ ନିଜର ଭାଗବତର ଟୀକା-ସୁବୋଧିନୀ ଗାଇ ଶୁଣାଇଲେ । ତାଙ୍କ କୃପାବଳରେ ସୁର ଦାସଙ୍କ ହୃଦୟରେ ଭଗବାନ କୃଷ୍ଣଙ୍କ ଭାଗବତ ଲୀଳାର ସ୍ଫୁରଣ ଘଟିଲା । ସୁର ଦାସ ସ୍ୱୀକାର କଲେ ପ୍ରଭୁ ! ମୋତେ ଗୁରୁତତ୍ତ୍ୱ କହନ୍ତୁ । ଲୀଳା ଭେଦ ମଧ୍ୟ ବତାଇ ଦିଅନ୍ତୁ ।

'ସୁରସାଗର'ରେ ସେ ଭଗବାନଙ୍କ ଲୀଳା-ସାହିତ୍ୟ ବର୍ଣ୍ଣନା କରି ନିଜ ଜୀବନକୁ ଧନ୍ୟ କରି ଯାଇଛନ୍ତି । ସେ ପୂର୍ଣ୍ଣରୂପେ ଶ୍ରୀକୃଷ୍ଣଙ୍କ ନିକଟରେ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ଶ୍ରୀକୃଷ୍ଣ ହିଁ ତାଙ୍କପାଇଁ ସବୁକିଛି ଥିଲେ ।

ଥରେ ମହାସଙ୍ଗୀତଜ୍ଞ ତାନସେନ୍ ଆକବରଙ୍କ ରାଜ-ଦରବାରରେ ସୁର ଦାସଙ୍କର ଗୋଟିଏ ପଦ ଗାଇଲେ । ତାହା ଖୁବ୍ କମନୀୟ ମଧୁର ପଦଟିଏ । ଏହା ଶୁଣି ଆକବର, ସୁର ଦାସଙ୍କୁ ଦେଖିବାପାଇଁ ଉତ୍କଣ୍ଠିତ ହେଲେ । ସେ ନିଜେ ତାନସେନ୍‌ଙ୍କ ସଙ୍ଗରେ ମଥୁରା ଆସି ସୁର ଦାସଙ୍କୁ ଦର୍ଶନ କରିଥିଲେ । ଲୀଳା-ପଦ ଗାନ କରିବାପାଇଁ ସେ ସୁର ଦାସଙ୍କୁ ଅନୁରୋଧ କଲେ । ସୁର ଦାସ ଗୋଟିଏ ପଦ ଗାଇ ଶୁଣାଇଲେ । ତା'ର ଅର୍ଥ ହେଉଛି : ହେ ମନ ! ମାଧବଙ୍କ ସହିତ ପ୍ରୀତିକର...

ବାଦଶାହ ଆକବର ତାଙ୍କର ଭକ୍ତି ପରୀକ୍ଷା କରିବାକୁ ଚାହିଁଲେ, ତେଣୁ ନିଜର ଯଶ-ବର୍ଣ୍ଣନା କରିବାପାଇଁ କହିଲେ ।

ସୁର ଦାସ ତ ଶ୍ରୀକୃଷ୍ଣଙ୍କ ଭକ୍ତ ଥିଲେ, ତାଙ୍କ ହୃଦୟରେ ମଦନମୋହନ ହିଁ ଅବସ୍ଥାପିତ, ତେଣୁ ସେ ଯଶ-ବର୍ଣ୍ଣନାରେ ଯାହା ଗାନ କଲେ ତାହା ସବୁ ଶ୍ରୀକୃଷ୍ଣଙ୍କ ଲୀଳା-ମାଧୁର୍ଯ୍ୟ ବର୍ଣ୍ଣନାରେ ପୂର୍ଣ୍ଣ ଥିଲା ।

ସୁର ଦାସଙ୍କ ଜୀବନର ଅନ୍ତିମ ସମୟର କଥା ବଡ଼ ଅଦ୍ଭୁତ । ସେ ପ୍ରତିଦିନ ଶ୍ରୀନାଥଙ୍କୁ ଦର୍ଶନ କରିବାପାଇଁ ପରାସୋଲିଠାରୁ ଆସୁଥିଲେ । ଅନ୍ତିମ ଦିନ ସେ ପ୍ରାତଃକାଳରେ ମଙ୍ଗଳ ଆରତି ଦର୍ଶନ କରିବାକୁ ଆସିଲେ । ସେହି ସମୟରେ ତାଙ୍କ ଦେହ ଦୁର୍ବଳ ହୋଇପଡ଼ିଲା । କୌଣସି ପ୍ରକାରେ ସେ ପରାସୋଲି ଫେରିଆସିଲେ । ଗୋଟିଏ ଚଉରା ନିକଟରେ ଶ୍ରୀନାଥଙ୍କ ପତାକା ଆଡ଼କୁ ମୁହଁକରି ତଳେ ଲେଟିପଡ଼ିଲେ । ଏଣେ ଗୋସାଇଁ ବିଠ୍ଠଳ ନାଥ, ମହାପ୍ରଭୁ ଶ୍ରୀନାଥଙ୍କ ଶୃଙ୍ଗାର କରୁଥାନ୍ତି । ଶୃଙ୍ଗାରର ଦର୍ଶନ ଖୋଲିବା ପରେ ସେ ଦେଖିଲେ ଯେ, ମନ୍ଦିରର ଜଗମୋହନଠାରେ ସୁର ଦାସ କୀର୍ତ୍ତନ କରୁ-ନାହାନ୍ତି । ତା'ପରେ ସୁର ଦାସଙ୍କ ମହାପ୍ରସ୍ଥାନର ଆଶଙ୍କାରେ ତାଙ୍କ ପ୍ରାଣ କାନ୍ଦିଉଠିଲା । ସେ ପରାସୋଲି ଗ୍ରାମକୁ ଲୋକ ପଠାଇ ଖବର ପଠାଇଲେ ଯେ, ଆଜି ପୁଷ୍ଟିମାର୍ଗର ଜାହାଜ ଯିବା ସମୟ ହୋଇଗଲାଣି । ଯାହାର ଯାହା ନେବାର ଅଛି, ଯାଇ ତାଙ୍କଠାରୁ ନେଇଯାଆନ୍ତୁ । ରାଜଭୋଗ ଆରତି କରିସାରିବା ପରେ ସେ ନିଜେ କୁମ୍ଭନ ଦାସ ଏବଂ ଗୋବିନ୍ଦ ଦାସଙ୍କ ସଙ୍ଗରେ ପରାସୋଲି ଗଲେ । ବିଠ୍ଠଳ ନାଥ, ସୁର ଦାସଙ୍କ ହାତ ଧରି ପଚାରିଲେ, "ଦେହ କେମିତି ଅଛି । ସୁର ଦାସ କହିଲେ, ମୁଁ ତ ଆପଣଙ୍କୁ ହିଁ ପ୍ରତୀକ୍ଷା କରିଥିଲି । ତା'ପରେ ସେ ତାଙ୍କ ଚରଣ ବନ୍ଦନା କରି ପଦଟିଏ ଗାଇଲେ । ତା'ପରେ ରାଧାକୃଷ୍ଣଙ୍କ ଧ୍ୟାନ କଲେ ।"

ଚତୁର୍ଭୁଜ ଦାସ କହିଲେ, "ଆପଣ ତ ଅସଂଖ୍ୟ ପଦ୍ୟ ରଚନା କରିଛନ୍ତି, କିନ୍ତୁ ମହାପ୍ରଭୁ ବଲ୍ଲଭାଚାର୍ଯ୍ୟଙ୍କ ସମ୍ବନ୍ଧରେ ଗୋଟିଏ ହେଲେ ପଦ ଲେଖିଲେ ନାହିଁ।"

ସୁର ଦାସ କହିଲେ, "ମୁଁ ଗୁରୁ ଓ ଭଗବାନଙ୍କ ମଧ୍ୟରେ କୌଣସି ତଫାତ ଅଛି ବୋଲି ଜାଣିପାରୁ ନାହିଁ। ମୋ ପାଇଁ ପ୍ରଭୁ ଶ୍ରୀନାଥ ଏବଂ ଆଚାର୍ଯ୍ୟ ଦୁହେଁ ଏକ। ମୁଁ ସମୁଦାୟ 'ସୁରସାଗର'ରେ ଆଚାର୍ଯ୍ୟଙ୍କର ହିଁ ଯଶ ବର୍ଣ୍ଣନା କରିଛି। ତା'ପରେ ସେ ଶ୍ରୀରାଧା, ଶ୍ରୀନାଥ ଏବଂ ଆଚାର୍ଯ୍ୟ ମହାପ୍ରଭୁଙ୍କୁ ଧ୍ୟାନ କରୁକରୁ ଅମର ଧାମକୁ ଯାତ୍ରା କଲେ।

ସୁର ଦାସ, ତାଙ୍କ ଜୀବନସାରା ଭକ୍ତିର ଆଶ୍ରୟୀ ହୋଇଥିଲେ। ତାଙ୍କ ରଚିତ 'ସୁରସାଗର'କୁ ପଢ଼ିଲେ ଜଣାପଡ଼େ, ଭକ୍ତି ବିନା କର୍ମ ଏବଂ ଜ୍ଞାନ ଦୁହେଁ ମୂଲ୍ୟହୀନ। ଭଗବାନଙ୍କ ନିକଟକୁ ଯିବାକୁ ହେଲେ ଭକ୍ତି ହିଁ ଏକମାତ୍ର ମାଧ୍ୟମ। ମଧ୍ୟଯୁଗୀୟ ଭକ୍ତି ସାହିତ୍ୟ-ସାମ୍ରାଜ୍ୟର ସେ ସୂର୍ଯ୍ୟ ଥିଲେ, ଏହା ନିଃସନ୍ଦେହରେ କୁହାଯାଇପାରେ।



# ମହର୍ଷି ଅଗସ୍ତ୍ୟ

ଭାରତୀୟ ଋଷିମାନଙ୍କ ମଧ୍ୟରେ ମହର୍ଷି ଅଗସ୍ତ୍ୟଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି । ସପ୍ତର୍ଷିଙ୍କ ମଧ୍ୟରେ ତାଙ୍କୁ ଗଣନା କରାଯାଇଥାଏ । ସେ ନିଜର ଅଖଣ୍ଡ ସାଧନା ଏବଂ ତପସ୍ୟାର ଶକ୍ତି ବଳରେ ମାନବ ଜାତିର କଲ୍ୟାଣ ସାଧନ କରିଯାଇଛନ୍ତି । ସେଥିପାଇଁ ଭାରତୀୟ ଜନତାଙ୍କ ନିକଟରେ ସେ ଯୁଗେ ଯୁଗେ ଆଦରଣୀୟ ।

ବୈବସ୍ୱତ ମନ୍ୱନ୍ତରରେ ମିତ୍ରାବରୁଣ ଋଷିଙ୍କ ଗୃହରେ ଅଗସ୍ତ୍ୟ ଭୂମିଷ୍ଠ ହୋଇଥିଲେ । ତାଙ୍କ ଜନ୍ମ ସମ୍ବନ୍ଧରେ ପୁରାଣମାନଙ୍କରେ ଏକ ଅଦ୍ଭୁତ କଥା କୁହାଯାଇଛି । ତାହା ମନୋମୁଗ୍ଧକର ଏବଂ ଚିତ୍ତାକର୍ଷକ ।

ମିତ୍ରାବରୁଣ ସମୁଦ୍ରକୂଳରେ ବାସ କରୁଥା'ନ୍ତି । ତାଙ୍କ ଆଶ୍ରମ ମଧ୍ୟ ସେଠାରେ ନିର୍ମିତ ହୋଇଥାଏ । ସମୁଦ୍ରରେ ସବୁବେଳେ ଢେଉ ଉଠେ । ସେହି ଢେଉ ବୃଦ୍ଧି ପାଇଲେ ମିତ୍ରାବରୁଣଙ୍କର ଅନେକ କ୍ଷତି ହୁଏ । କାରଣ କେଉଁଦିନ କୌପୀନ, କେଉଁ ଦିନ ତାଙ୍କର

ମହାରାଜ ସଗରଙ୍କ ଅଶ୍ୱମେଧ ଯଜ୍ଞର ଅଶ୍ୱକୁ ଦେବତାମାନେ ଘେରାଇ ନେଇ ଲୁଚାଇଦେବା କଥା ତୁମେମାନେ ସ୍ୱା ପୂର୍ବରୁ ପଢ଼ିଛ ନିଶ୍ଚୟ । ସେହି ଯଜ୍ଞ-ଅଶ୍ୱକୁ ଅନୁସନ୍ଧାନ କରିବାପାଇଁ ମହାରାଜ ସଗର ତାଙ୍କର ଷାଠିଏ ହଜାର ପୁତ୍ରଙ୍କୁ ପଠାଇଲେ । ସେମାନେ ଚତୁର୍ଦ୍ଦିଗ ଅନୁସନ୍ଧାନ କଲା ପରେ ମଧ୍ୟ କେଉଁଠି ହେଲେ ଅଶ୍ୱକୁ ପାଇଲେ ନାହିଁ । ଶେଷରେ କପିଳ ମୁନିଙ୍କ ଆଶ୍ରମରେ ଅଶ୍ୱଟି ବନ୍ଧା ହୋଇଥିବାର ଦେଖି ଉତ୍ତେଜିତ ହୋଇପଡ଼ିଲେ । ସମସ୍ତେ ସେଠାରେ ପାଟିତୁଣ୍ଡ କରିବାରୁ କପିଳ ମୁନିଙ୍କ ଧ୍ୟାନ ଭାଙ୍ଗିଗଲା । ସେ କ୍ରୋଧ ଦୃଷ୍ଟିରେ ଏହି ଷାଠିଏ ହଜାର ପୁତ୍ରଙ୍କୁ ଚାହିଁବାରୁ ସମସ୍ତେ ଜଳି ଭସ୍ମ ହୋଇଗଲେ ।

ପୁତ୍ରମାନେ ପ୍ରତ୍ୟାବର୍ତ୍ତନ ନ କରିବାରୁ ମହାରାଜ ସଗର ପୁଣି ଯୁବରାଜ ଅଂଶୁମାନଙ୍କୁ ସେମାନଙ୍କର ସନ୍ଧାନ ନେବାପାଇଁ ପ୍ରେରଣ କଲେ । ଅଂଶୁମାନ ମଧ୍ୟ ଯାଇ କପିଳ ମୁନିଙ୍କ ଆଶ୍ରମରେ ଅଶ୍ୱକୁ ଦେଖିଲେ । ତାକୁ ଫେରାଇଦେବାପାଇଁ ସେ ମୁନିଙ୍କୁ ପ୍ରାର୍ଥନା କଲେ । ତାହାର ପ୍ରାର୍ଥନା ଶୁଣି କପିଳ ମୁନି ଅଶ୍ୱକୁ ଫେରାଇଦେଲେ ଏବଂ କହିଲେ, ଯଦି ତୁମେ ସଗରଙ୍କ ଷାଠିଏ ହଜାର ପୁତ୍ରଙ୍କ ସଦ୍‌ଗତି ଚାହଁ, ତେବେ ସ୍ୱର୍ଗଲୋକରୁ ଗଙ୍ଗାଙ୍କୁ ପୃଥିବୀକୁ ନେଇଆସ । ତେବେ ଯାଇ ସେମାନେ ମୁକ୍ତି ପାଇବେ···

ତାଙ୍କର କଥା ଅନୁସାରେ ଅଂଶୁମାନ ଗଙ୍ଗାଙ୍କ ସକାଶେ ତପସ୍ୟା କରିବାରେ ଲାଗିଲେ, କିନ୍ତୁ ଦୁଃଖର କଥା—ବହୁ କାଳ

ତପସ୍ୟା ପରେ ମଧ୍ୟ ଗଙ୍ଗା ସନ୍ତୁଷ୍ଟ ହେଲେ ନାହିଁ । ତା'ପରେ ଅଂଶୁମାନ ମୃତ୍ୟୁବରଣ କଲେ ।

ଏହା ପରେ ମହାରାଜ ଦିଲୀପ ରାଜସିଂହାସନରେ ବସିଲେ । ସେ ମଧ୍ୟ ଗଙ୍ଗାଙ୍କପାଇଁ ଘୋର ତପସ୍ୟା କଲେ । ଅନେକ ଦାନ-ଦକ୍ଷିଣା ଦେଲେ, କିନ୍ତୁ ପୃଥିବୀକୁ ଗଙ୍ଗା ଆସିଲେ ନାହିଁ ।

ଦିଲୀପଙ୍କ ମୃତ୍ୟୁ ପରେ ମହାରାଜ ଭଗୀରଥ ରାଜ୍ୟର ଦାୟିତ୍ୱ ବହନ କଲେ । ସେ ମଧ୍ୟ ନିଜର ପୂର୍ବପୁରୁଷଙ୍କ ଉଦ୍ଧାର ନିମନ୍ତେ ବ୍ରତ ଆଚରଣ କଲେ । ନିର୍ଜନ ଅରଣ୍ୟକୁ ଯାଇ ଗଙ୍ଗାଙ୍କ ଉଦ୍ଦେଶ୍ୟରେ ଘୋର ତପସ୍ୟା କରିବାରେ ଲାଗିଲେ । ତାଙ୍କର ନିଷ୍ଠା ଏବଂ ଅଭିଳାଷ ଖୁବ୍ ମହତ୍ ଥିଲା ।

ଦିନ, ବର୍ଷ ଓ ମାସ ହୋଇ ଏମିତ ଅନେକ ଦିନ ବିତିଗଲା । ତଥାପି ବି ସେ ତପସ୍ୟାମଗ୍ନ, ସାଧନାରେ ତ୍ରୁଟି ନାହିଁ ।

ତାଙ୍କର ଏକନିଷ୍ଠ ତପସ୍ୟା ଦେଖି ଈଶ୍ୱରଙ୍କ ସିଂହାସନ ମଧ୍ୟ ଅସ୍ଥିର ହେଲା । ଏଥର ଗଙ୍ଗା ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ସେ ଭଗୀରଥଙ୍କ ସାମନାରେ ଉପସ୍ଥିତ ହେଲେ ।

ପ୍ରସନ୍ନ ସ୍ୱରେ ବାଣୀରେ ଭଗୀରଥଙ୍କୁ ସେ କହିଲେ, ଭଗୀରଥ ! ମୁଁ ତୁମର ତପସ୍ୟା ଏବଂ ଭକ୍ତିଭାବ ଦେଖି ଅତ୍ୟନ୍ତ ଆନନ୍ଦିତ । କୁହ, ତୁମେ କ'ଣ ଚାହଁ ?

ମାତା ! ଭଗୀରଥ ଉତ୍ତର ଦେଲେ : ମୁଁ ଯାହା ବୁଝୁଛି, ତାହା ଆପଣଙ୍କ ନିକଟରେ ଅଛପା ନାହିଁ । ମୋର ପୂର୍ବପୁରୁଷଙ୍କର ମୁକ୍ତି ସକାଶେ ଆପଣଙ୍କୁ ପୃଥିବୀ ଉପରେ ଅବତୀର୍ଣ୍ଣ ହେବାକୁ ପଡ଼ିବ ।' ଆପଣଙ୍କ ପବିତ୍ର ସ୍ପର୍ଶ ପାଇଲେ ପୃଥିବୀ ମଧ୍ୟ ପବିତ୍ର ହେବ···ମୋର ପୂର୍ବପୁରୁଷଙ୍କୁ ମୁକ୍ତି ଦେବା ସଙ୍ଗେ ସଙ୍ଗେ ସାରା ପୃଥିବୀର ଲୋକେ ମଧ୍ୟ ଆପଣଙ୍କ ସାହଚର୍ଯ୍ୟରେ ପାପମୁକ୍ତ ହେବେ ।

ଗଙ୍ଗା କହିଲେ : ପୃଥିବୀକୁ ଯିବାପାଇଁ ମୋର କୌଣସି ଆପତ୍ତି ନାହିଁ ଭଗୀରଥ ! କିନ୍ତୁ ମୋ' ମନରେ ସନ୍ଦେହ ରହିଛି —ମୋର ଜଳଧାରା ଯେତେବେଳେ ସ୍ୱର୍ଗରୁ ତଳକୁ ଖସିବ, ସେତେବେଳେ ତାହା ପୃଥିବୀର ମାଟିକୁ ଚିରି ପାତାଳକୁ ଚାଲିଯିବ···ମୋର ଜଳଧାରାକୁ ଭୂମି ଉପରେ କିଏ ରୋକି ପାରିବ ?

ଦ୍ୱିତୀୟ କଥା ହେଲା—ସଂସାରରେ ପାପୀମାନଙ୍କ ସଂଖ୍ୟା ପ୍ରଚୁର । ସେମାନେ ସମସ୍ତେ ମୋ' ଜଳରେ ସ୍ନାନ କରି ମୁକ୍ତି ପାଇବାକୁ ଇଚ୍ଛା କରିବେ···ମୁଁ ସମସ୍ତଙ୍କୁ ମୁକ୍ତି ଦେବାପାଇଁ ଏତେ ସବୁ କରିବି କେତେବେଳେ ?

ଭଗୀରଥ ଉତ୍ତର ଦେଲେ ମାତା ! ଆପଣଙ୍କର ପ୍ରବଳ ଧାରାକୁ ଭଗବାନ ଶିବ ନିଜ ଶିର ଉପରେ ଧାରଣ କରିବେ । ଆପଣଙ୍କୁ ମୁଁ ଅସମ୍ମାନିତ ହେବାକୁ ଆଦୌ ଦେବି ନାହିଁ, ତେଣୁ ଏକଥା ଚିନ୍ତା କରନ୍ତୁ ନାହିଁ । ପ୍ରେମ ଏବଂ ଶ୍ରଦ୍ଧା ଅନୁସାରେ

ଆପଣଙ୍କୁ ଲୋକମାନେ ପ୍ରାପ୍ତ ହେବେ । ଶ୍ରଦ୍ଧା ଏବଂ ଭକ୍ତି ନଥିବା ଲୋକେ ଆପଣଙ୍କ ଠାରୁ ଆଶୀର୍ବାଦ ଲାଭ କରିପାରନ୍ତେ ନାହିଁ ।

ଭଗୀରଥଙ୍କ ପ୍ରାର୍ଥନା ଏବଂ ଯୁକ୍ତି ଶୁଣି ଗଙ୍ଗା ମୁଗ୍ଧ ହୋଇଗଲେ । ସେ ଆଉ ମନା କରିପାରିଲେ ନାହିଁ । ସ୍ୱର୍ଗଲୋକରୁ ପୃଥିବୀକୁ ଆସିବାପାଇଁ ତାଙ୍କୁ ସ୍ୱୀକୃତି ଦେବାକୁ ପଡ଼ିଲା ।

ବର୍ତ୍ତମାନ ମହାଦେବଙ୍କୁ ସନ୍ତୁଷ୍ଟ କରିବାକୁ ପଡ଼ିବ । ଭଗୀରଥ ସିନା କହିଦେଲେ, କିନ୍ତୁ କାମ ହେବ କେମିତି ? ପ୍ରକୃତରେ ଦେଖିବାକୁଗଲେ ଗଙ୍ଗାଙ୍କ ପ୍ରବଳ ସ୍ରୋତକୁ ଅଟକାଇବାକୁ ଆଉ କାହାରି ବା ଶକ୍ତି ଅଛି ? ମହାଦେବଙ୍କ ବିନା ସାହଚର୍ଯ୍ୟରେ ଗଙ୍ଗାଙ୍କୁ ପୃଥିବୀ ବକ୍ଷରେ ଅବତୀର୍ଣ୍ଣ କରାଇବା ଏକାନ୍ତ ଅସମ୍ଭବ ।

ଭଗୀରଥ ଭଗବାନ ଶିବଙ୍କୁ ସନ୍ତୁଷ୍ଟ କରିବାପାଇଁ ତପସ୍ୟା କରିବାରେ ଲାଗିଲେ । ସେ ଆଶୁତୋଷ !

କିଛିଦିନ ପରେ ତାଙ୍କ ତପସ୍ୟା, ଆଚରଣରେ ପ୍ରସନ୍ନ ହୋଇ ଭଗବାନ ଶିବ ଆବିର୍ଭୂତ ହେଲେ ଏବଂ କହିଲେ : ତୁମର ଏକନିଷ୍ଠ ସାଧନା ଦେଖି ମୁଁ ପ୍ରୀତ ହୋଇଛି । ତୁମର ଅଭିଳାଷ ଅନୁଯାୟୀ ମୁଁ ନିଶ୍ଚୟ ଗଙ୍ଗାଙ୍କୁ ମୋ' ନିଜ ମସ୍ତକରେ ଧାରଣକରି ପୃଥିବୀ ଉପରକୁ ଛାଡ଼ିବି···ଏଥିପାଇଁ ତୁମର ବିଚଳିତ ହେବାର କିଛି ନାହିଁ ।

ଆଉ କୌଣସି ଅସୁବିଧା ରହିଲା ନାହିଁ । ଗଙ୍ଗା, ସ୍ୱର୍ଗ-ଲୋକରୁ ପ୍ରବଳ ବେଗରେ ତଳକୁ ଖସିଲେ···ତାଙ୍କର ପ୍ରବଳ ବେଗ ଏବଂ ପ୍ରଚଣ୍ଡ ସ୍ରୋତ ଧାରାର ଶବ୍ଦ ବାସ୍ତବିକ ଅତି ଭୟଙ୍କର ଥିଲା । ମନେହେଲା, ସତେ ଯେମିତି ଗଙ୍ଗା ପୃଥିବୀର ମାଟିକୁ ଖୋଳି ପକାଇବେ ଏବଂ ପାତାଳ ଭିତରକୁ ଚାଲିଯିବେ !

କିନ୍ତୁ ଆକାଶକୁ ପୂର୍ଣ୍ଣ କରୁଥିବା ଶିବଙ୍କ କେଶରାଶି ବିସ୍ତୃତ ହୋଇଗଲା । ସେହି କେଶ ଦେଇ ଗଙ୍ଗାଙ୍କ ଧାର ବନ୍ଧି ଆସିଲା । ନିଜର ଗହନ ଜଟାଜୁଟ ମଧ୍ୟରେ ଗଙ୍ଗାଙ୍କୁ ସେ ଲୁଚାଇଦେଲେ···

ଅନେକ ଦିନ ପର୍ଯ୍ୟନ୍ତ ଗଙ୍ଗା, ତାଙ୍କ ଜଟାରାଶି ମଧ୍ୟରେ ଲୁଚି ରହିଲେ । ଭଗୀରଥଙ୍କ ଉଦ୍ଦେଶ୍ୟ ସଫଳ ହୋଇପାରିଲା ନାହିଁ । ସେ ବଡ଼ ଚିନ୍ତାରେ ପଡ଼ିଗଲେ । ଭଗବାନ ଶଙ୍କରଙ୍କ ଜଟା ଭିତରେ ଗଙ୍ଗା ଲୁଚି ରହିଲେ—ଅଥଚ ସମସ୍ତେ ମୁକ୍ତି ପାଇବେ କେମିତି ? ଗଙ୍ଗାଙ୍କ ଜଳ ପୂର୍ଣ୍ଣବିନା ତ ଏକଥା ଅସମ୍ଭବ !

ଭଗୀରଥ ଯେଉଁ କାର୍ଯ୍ୟ ସକାଶେ ଏତେ ପରିଶ୍ରମ କଲେ, ଏକନିଷ୍ଠ ବ୍ରତ ଆଚରଣ କଲେ, ତାହା ଯେମିତିକୁ ସେମିତି ରହିଲା, ତେଣୁ ସେ ପୁନର୍ବାର ଶଙ୍କରଙ୍କୁ ପ୍ରସନ୍ନ କରିବାପାଇଁ ତପ ସାଧନାରେ ମଗ୍ନ ରହିଲେ !

କିଛିଦିନ ପରେ ଶିବ ସନ୍ତୁଷ୍ଟ ହେଲେ । ଭଗୀରଥ ଯୋଡ଼ହସ୍ତ ହୋଇ କହିଲେ : ଭଗବାନ ! ମୋର ତ କୌଣସି

କାର୍ଯ୍ୟ ସାଧିତ ହେଲା ନାହିଁ । ଗଙ୍ଗାଙ୍କ ଜଳ ସ୍ପର୍ଶକରି ମୋର ପୂର୍ବପୁରୁଷଗଣ ଉଦ୍ଧାର ପାଇବେ ବୋଲି ମୁଁ ଗଙ୍ଗାଙ୍କୁ ପୃଥିବୀ ଉପରକୁ ଆଣିବାପାଇଁ ଯଜ୍ଞ କରାଇଥିଲି । ସେ ମଧ୍ୟ ପ୍ରସନ୍ନ ହୋଇ ସ୍ୱୀକୃତି ପ୍ରଦାନ କଲେ, କିନ୍ତୁ ଆପଣ ତାଙ୍କୁ ନିଜ ଜଟାରାଶି ମଧ୍ୟରେ ଗୋପନ କରି ରଖିଦେଲେ । ତେବେ ମୋର ଅଭିଳାଷ ପୂରଣ ହେବ କେମିତି ? ମୋର ପୂର୍ବପୁରୁଷଗଣ ଉଦ୍ଧାର ପାଇବେ କେମିତି ?

ଭଗୀରଥଙ୍କ ପ୍ରାର୍ଥନା ଶୁଣି ଭଗବାନ ଶଙ୍କର ନିଜର ଗୋଟିଏ ଜଟା ଚପୁଡ଼ିଦେଲେ । ସେଥିରୁ ଗଙ୍ଗା ଜଳର ରୂପ ଧାରଣ କରି ପୁଣି ବହିଚାଲିଲେ । ଆଗେ ଆଗେ ଭଗୀରଥଙ୍କ ରଥ ଚାଲିଥାଏ, ପଛରେ ଗଙ୍ଗା...

ଗଙ୍ଗା ବହୁସ୍ଥାନ ଡେଇଁ, ଅନେକ ଦେଶ ପରିଭ୍ରମଣ କରି କରି, ସଗରଙ୍କ ଷାଠିଏ ହଜାର ପୁତ୍ରଙ୍କ ଭସ୍ମ ପଡ଼ିଥିବା ସ୍ଥାନରେ ଯାଇ ପହଞ୍ଚିଲେ । ତାଙ୍କ ପବିତ୍ର ଜଳର ସ୍ପର୍ଶ ପାଇ ଭଗୀରଥଙ୍କ ଷାଠିଏ ହଜାର ପୂର୍ବପୁରୁଷ, ଗୋଟିଏ କ୍ଷଣରେ ମୁକ୍ତିପଦ ପ୍ରାପ୍ତ ହୋଇଗଲେ...ସମସ୍ତେ ଆନନ୍ଦବିଭୋର ହୋଇ ଗଙ୍ଗା ମାତାଙ୍କ ଜୟଧ୍ୱନି କରିବାକୁ ଲାଗିଲେ ।

ଭଗୀରଥଙ୍କ ଅକଥନୀୟ ଉଦ୍ୟମ ସଫଳ ହେଲା । ସେହିଦିନ ଠାରୁ ଧରଣୀ ବକ୍ଷରେ ଗଙ୍ଗାଙ୍କ ସ୍ୱର୍ଗୀୟ ଜଳଧାରା ପ୍ରବାହିତ ହେବାରେ ଲାଗିଛି । ଶ୍ରଦ୍ଧା ଏବଂ ଭକ୍ତି ଅନୁସାରେ ଅନ୍ୟାନ୍ୟ ଲୋକେ ମଧ୍ୟ ଗଙ୍ଗା ମାତାଙ୍କ ଆଶୀର୍ବାଦ ଲଭିକରି ପାପମୁକ୍ତ ହେଉଛନ୍ତି ।



# ମହର୍ଷି ଅଗସ୍ତ୍ୟ

ଭାରତୀୟ ଋଷିମାନଙ୍କ ମଧ୍ୟରେ ମହର୍ଷି ଅଗସ୍ତ୍ୟଙ୍କର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି । ସପ୍ତର୍ଷିଙ୍କ ମଧ୍ୟରେ ତାଙ୍କୁ ଗଣନା କରାଯାଇଥାଏ । ସେ ନିଜର ଅଖଣ୍ଡ ସାଧନା ଏବଂ ତପସ୍ୟାର ଶକ୍ତି ବଳରେ ମାନବ ଜାତିର କଲ୍ୟାଣ ସାଧନ କରିଯାଇଛନ୍ତି । ସେଥିପାଇଁ ଭାରତୀୟ ଜନତାଙ୍କ ନିକଟରେ ସେ ଯୁଗେ ଯୁଗେ ଆଦରଣୀୟ ।

ବୈବସ୍ୱତ ମନ୍ୱନ୍ତରରେ ମିତ୍ରାବରୁଣ ଋଷିଙ୍କ ଗୃହରେ ଅଗସ୍ତ୍ୟ ଭୂମିଷ୍ଠ ହୋଇଥିଲେ । ତାଙ୍କ ଜନ୍ମ ସମ୍ବନ୍ଧରେ ପୁରାଣମାନଙ୍କରେ ଏକ ଅଦ୍ଭୁତ କଥା କୁହାଯାଇଛି । ତାହା ମନୋମୁଗ୍ଧକର ଏବଂ ଚିତ୍ତାକର୍ଷକ ।

ମିତ୍ରାବରୁଣ ସମୁଦ୍ରକୂଳରେ ବାସ କରୁଥା'ନ୍ତି । ତାଙ୍କ ଆଶ୍ରମ ମଧ୍ୟ ସେଠାରେ ନିର୍ମିତ ହୋଇଥାଏ । ସମୁଦ୍ରରେ ସବୁବେଳେ ଢେଉ ଉଠେ । ସେହି ଢେଉ ବୃଦ୍ଧି ପାଇଲେ ମିତ୍ରାବରୁଣଙ୍କର ଅନେକ କ୍ଷତି ହୁଏ । କାରଣ କେଉଁଦିନ କୌପୀନ, କେଉଁ ଦିନ ତାଙ୍କର

କମଣ୍ଡଳୁଁ, ଆଉ କେବେ ତାଙ୍କ ଖାଇବା ପିଇବା ପଦାର୍ଥ ଭେଉରେ ଭସି ସମୁଦ୍ର ଭିତରକୁ ଚାଲିଯାଏ ।

ଏହା ଦେଖି ମିତ୍ରାବରୁଣଙ୍କ ମନରେ ଦୁଃଖ ଜାତ ହୁଏ । କାମରେ ମଧ୍ୟ ବାଧା ସୃଷ୍ଟି ହୁଏ । ସମୁଦ୍ରର ଏହି ଉତ୍ପାତ ଫଳରେ ସେ ବିଚଳିତ ହୋଇପଡ଼ନ୍ତି । ସମୁଦ୍ରକୁ ବହୁ ଅନୁନୟ ବିନୟ ହୋଇ ପ୍ରାର୍ଥନା କରନ୍ତି, କିନ୍ତୁ ଫଳ କିଛି ହୁଏ ନାହିଁ । ସମୁଦ୍ରର ବାରମ୍ବାର ସେହି ଉତ୍ପାତ ଚାଲିଥାଏ ।

ଏଥର ଆଉ ମିତ୍ରାବରୁଣ ସହ୍ୟ କରିପାରିଲେ ନାହିଁ । ସମୁଦ୍ରର ଉତ୍ପାତ ଫଳରେ ସେ ଅଗ୍ନିଶର୍ମା ହୋଇଉଠିଲେ । ଏହି ଅତ୍ୟାଚାରର ପ୍ରତିଶୋଧ ନେବାପାଇଁ ଉପାୟ ଚିନ୍ତା କଲେ । ଶେଷରେ ସ୍ଥିରକଲେ—କୌଣସି ପ୍ରକାରେ ଏମିତି ଗୋଟିଏ ପ୍ରତାପୀ ଏବଂ ମେଧାବୀ ପୁତ୍ର ଜାତ କରିବା ଉଚିତ, ଯେ କି ଏହି ଅତ୍ୟାଚାରର ଯଥାବିଧି ପ୍ରତିକାର କରିପାରିବ ।

ପୂର୍ବଭଳି ସମୁଦ୍ରର ଭୟଙ୍କର ଲହଡ଼ି ଉଠୁଥାଏ, ପଡ଼ୁଥାଏ । ମିତ୍ରାବରୁଣ ସେହି କଥା ଚିନ୍ତାକରି ପ୍ରତାପଶାଳୀ ପୁତ୍ର ସକାଶେ ତପସ୍ୟା କରିବାରେ ଲାଗିଲେ । ଏମିତି ଅନେକଦିନ କଟିଗଲା ।

ଶେଷରେ ତପସ୍ୟା ପୂର୍ଣ୍ଣ ହେଲା । ମିତ୍ରାବରୁଣ ନିଜର ତେଜ ଗୋଟିଏ ମାଟି ଘଡ଼ିରେ ପୂର୍ଣ୍ଣକରି ତାକୁ ନିର୍ଜନ ସ୍ଥାନରେ

ରଖିଦେଲେ । ନଜେ ସେହି ମାଟିପାତ୍ରଟିକୁ ଏକ ବିଶେଷ ସ୍ତ୍ର ଅନୁସାରେ ତିଆରି କରିଥିଲେ ।

କିଛିଦିନ ଅନ୍ତେ ଦ୍ଧେଲ । ଦିନେ ଏକ ଶୁଭ ଅବସରରେ ସେହି ଘଡ଼ିଟି ତା' ମନକୁ ଫାଟିଗଲା ଏବଂ ତ' ଭିତରୁ ଏକ ସନ୍ତାନ ବାହାରିଲା । ଶିଶୁର ଦେହରେ ଯଜ୍ଞୋପବୀତ ଏବଂ କଟି ଦେଶରେ ଖଣ୍ଡିଏ ସୂତା ମଧ୍ୟ ଥିଲା । ଶିଶୁଟିର ଦେହରୁ ପ୍ରଚଣ୍ଡ ତେଜ ବାହାରୁଥାଏ । ସୂର୍ଯ୍ୟରଶ୍ମି ସଦୃଶ ଉଦ୍ଦୀପ୍ତ ଚେହେରାକୁ ଦେଖି ଲୋକେ ଆଶ୍ଚର୍ଯ୍ୟଚକିତ ହୋଇ-ପଡ଼ିଥିଲେ ।

ମିତ୍ରାବରୁଣ ସେହି ଶିଶୁକୁ ଅବଲୋକନ କରି ମୁଗ୍ଧ ହେଲେ । ତା' ନାମ ଦେଲେ ଅଗସ୍ତ୍ୟ···ଅଗସ୍ତ୍ୟଙ୍କ ଜନ୍ମ ମାଟି ଘଡ଼ିରୁ ହୋଇଥିଲା, ତେଣୁ ବହୁଲୋକ ତାଙ୍କୁ 'କୁମ୍ଭଜ' ବୋଲି ମଧ୍ୟ କହିଥା'ନ୍ତି ।

ସେ କ୍ରମେ ବଡ଼ ହେଲେ । ପାଠ ପଢିବା ସମୟ ହେବାରୁ ସେ ପିତାଙ୍କ ଆଦେଶ ପାଇ କାଶୀ ନଗରୀକୁ ବିଦ୍ୟାଶିକ୍ଷା କରିବା ପାଇଁ ଗଲେ । ତାଙ୍କର ଅପୂର୍ବ ପ୍ରତିଭା ଏବଂ ସ୍ମରଣଶକ୍ତି ଥିଲା, ତେଣୁ ସେ ଅଳ୍ପଦିନ ଭିତରେ ବହୁଜ୍ଞାନ ଅର୍ଜନ କରିବାକୁ ସମର୍ଥ ହେଲେ । ଜ୍ଞାନଗରିମାରେ ପୂର୍ଣ୍ଣତା ହାସଲ କରିବା ପରେ ତାଙ୍କ ହୃଦୟରେ ବୈରାଗ୍ୟର ଧାରା ପ୍ରବାହିତ ହେଲା । ସଂସାରର ସବୁକିଛି ତାଙ୍କୁ ବିଷତୁଲ୍ୟ ମନେହେଲା । ମାୟା-ମମତା ଠାରୁ ଦୂରରେ ରହିବାକୁ ତାଙ୍କ ମନରେ ଆଗ୍ରହ ଜନ୍ମିଲା ।

ସେ ବଣକୁ ଯାଇ ତପସ୍ୟା-ସାଧନାରେ ହିଁ ଜୀବନଟା କଟାଇବାକୁ ଚାହୁଁଥିଲେ, କିନ୍ତୁ ପିତାଙ୍କର ଅଭିଳାଷ ଥିଲା ଅନ୍ୟ ପ୍ରକାର। ଅଗସ୍ତ୍ୟଙ୍କୁ ଗୃହସ୍ଥ କରାଇ ନିଜ ବଂଶରକ୍ଷା କରିବାକୁ ତାଙ୍କର ଇଚ୍ଛା ଥିଲା।

ଅଗସ୍ତ୍ୟ ପିତାଙ୍କର ଅବାଧ୍ୟ ହୋଇପାରିଲେ ନାହିଁ। ପିତାଙ୍କ ଆଦେଶକୁ ହିଁ ଶିରୋଧାର୍ଯ୍ୟ ମନେକଲେ। ପିତାଙ୍କ ଅଭିଳାଷ ପୂରଣ କରିବା ହିଁ ତାଙ୍କ ଜୀବନର ଲକ୍ଷ୍ୟ ହେଲା। ସେ ଗୃହସ୍ଥ ହେବା-ପାଇଁ ପ୍ରସ୍ତୁତ ହେଲେ।

ଅଗସ୍ତ୍ୟ ନିଜର ବିବାହ ସକାଶେ ଗୋଟିଏ ଯୋଗ୍ୟ କନ୍ୟାର ଅନୁସନ୍ଧାନ କରିବାରେ ଲାଗିଲେ। ସେଥିପାଇଁ ଘରୁ ଯାତ୍ରା ଆରମ୍ଭ କଲେ। ବହୁସ୍ଥାନ ଭ୍ରମଣ କରି ସୁଦ୍ଧା ତାଙ୍କ ଉଦ୍ଦେଶ୍ୟ ଅନୁଯାୟୀ କନ୍ୟାଟିଏ ମିଳିଲା ନାହିଁ। ନିରାଶାରେ ଫେରିଆସିଲେ।

ଏହି ସମୟରେ ସେ ଜାଣିବାକୁ ପାଇଲେ, ବିଦର୍ଭ ଦେଶର ରାଜା ପୁତ୍ର ସନ୍ତାନ ସକାଶେ ତପସ୍ୟା କରୁଛନ୍ତି। ଏ କଥା ତାଙ୍କ ମନରେ ଏକପ୍ରକାର କୌତୂହଳ ସୃଷ୍ଟି କଲା। ନିଜର ସାଧନା ବଳରେ ସେ ଏମିତି ଏକ ଚକ୍ର ଚଳାଇଲେ, ଯଦ୍ଦ୍ୱାରା ବିଦର୍ଭ ରାଜାଙ୍କ ରାଣୀଙ୍କର ଗର୍ଭରେ ପୁତ୍ର ପରିବର୍ତ୍ତେ କନ୍ୟା ଅବତୀର୍ଣ୍ଣ ହେଲା। ଅଗସ୍ତ୍ୟ ଠିକ୍ ଯେମିତି ଏକ କନ୍ୟାର ଛବି ମନରେ ଚିନ୍ତା କରୁଥିଲେ, ସେହିପରି ସେ କନ୍ୟାଟିର ରୂପ ଗୁଣ ଥିଲା।

କିଛିଦିନ ପରେ ରାଣୀଙ୍କ ଗର୍ଭରୁ କନ୍ୟାଟିଏ ଭୂମିଷ୍ଠ ହେଲା। ରାଜା ବିସ୍ମିତ ହେଲେ। କାରଣ ପୁତ୍ର ସନ୍ତାନ ସକାଶେ ସେ

ତପସ୍ୟା କରିଥିଲେ । ତେବେ ଏ କି ପରିବର୍ତ୍ତନ ହେଲା ? ଭଗବାନ କାହିଁକି ତାଙ୍କ ପ୍ରାର୍ଥନା ଶୁଣିଲେ ନାହିଁ ? କେଉଁଠି ତେବେ ତାଙ୍କର ଅଭିଳଷିତ ପୁତ୍ର ଲୋପ ପାଇଗଲା ?

ବିଦର୍ଭ ରାଜାଙ୍କ ମନରେ ସୃଷ୍ଟି ହେଲା ଏମିତି ଅନେକ ଭାବାନ୍ତର, ତେଣୁ ସେହି କନ୍ୟାର ନାମ ଦେଲେ—ଲୋପାମୁଦ୍ରା···

ଅଲିଅଳରେ ବଢ଼ିଲା ଲୋପାମୁଦ୍ରା । କ୍ରମେ ବାଲ୍ୟଅବସ୍ଥା ଅତିକ୍ରମ କରି ସେ ବଡ଼ ହେଲା । ତା'ର ବିବାହ ସକାଶେ ରାଜା ସ୍ୱୟମ୍ବରର ଆୟୋଜନ କଲେ ।

ସ୍ୱୟମ୍ବର ସଭାକୁ ବହୁ ରାଜକୁମାର ଆସିଲେ । ଆନନ୍ଦର କୋଳାହଳରେ ରାଜପ୍ରାସାଦ ଓ ରାଜଧାନୀର ସର୍ବତ୍ର ପରିପୂର୍ଣ୍ଣ । ସାଜସଜ୍ଜାରେ ସ୍ୱୟମ୍ବର ସ୍ଥଳୀ ଅମରାବତୀ ସଦୃଶ ଶୋଭା ପାଉଛି ।

ଅଗସ୍ତ୍ୟ ମଧ୍ୟ ସ୍ୱୟମ୍ବରକୁ ଆସିଲେ । ସେ ସିଧାସଳଖ ରାଜାଙ୍କ ନିକଟକୁ ଯାଇ ଲୋପାମୁଦ୍ରାଙ୍କୁ ବିବାହ କରିବେବୋଲି କହିଲେ, କିନ୍ତୁ ରାଜା ସ୍ୱୀକୃତି ଦେଇପାରିଲେ ନାହିଁ । ଏ କଥା ଯାଇ ସେ ଲୋପାମୁଦ୍ରାଙ୍କୁ କହିଲେ । ଅଗସ୍ତ୍ୟଙ୍କ କଥା ସେ ଆଗରୁ ଶୁଣିଥିଲେ । ବର୍ତ୍ତମାନ ଏ ପ୍ରସ୍ତାବ ପିତାଙ୍କଠାରୁ ଶୁଣି ସେ ପ୍ରୀତ ହେଲେ ଏବଂ ତାଙ୍କୁ ବିବାହ କରିବାକୁ ସ୍ୱୀକୃତି ଦେଲେ ।

ସ୍ୱୟମ୍ବର ଯଥାବିଧି ପାଳିତ ହେଲା । ଅଗସ୍ତ୍ୟଙ୍କୁ ସ୍ୱାମୀ ରୂପେ ଲୋପାମୁଦ୍ରା ବାଛିଲେ । ଖୁବ୍ ଆଡ଼ମ୍ବର ସହକାରେ ବିବାହ ମଧ୍ୟ ସମ୍ପନ୍ନ ହେଲା ।

ତା'ପରେ ଲୋପାମୁଦ୍ରାଙ୍କୁ ସଙ୍ଗରେ ଧରି ସେ କାଶୀ ନଗରୀକୁ ଗମନ କଲେ । ପିତାଙ୍କ ଗୃହରେ ଲୋପାମୁଦ୍ରା ଉତ୍ତମ ଶିକ୍ଷା ପ୍ରାପ୍ତ ହୋଇଥିଲେ । ଜନ୍ମରୁ ହିଁ ସେ ତୀକ୍ଷଣ ବୁଦ୍ଧିସମ୍ପନ୍ନା ଥିଲେ । ତାଙ୍କ ପତିବ୍ରତା ଅପୂର୍ବ ଥିଲା । ସେ ଋଗ୍‌ବେଦର କେତେକ ସୂକ୍ତ ମଧ୍ୟ ରଚନା କରିଛନ୍ତି ।

ଅଗସ୍ତ୍ୟ ମହାଜ୍ଞାନୀ ଥିଲେ । ଯୁଦ୍ଧବିଦ୍ୟାରେ ମଧ୍ୟ ତାଙ୍କର ଅଗାଧ ଜ୍ଞାନ ଥିଲା । ଯେତେବେଳେ କୌଣସି ରାଜା ଅନ୍ୟାୟ, ଅନୀତି ମାର୍ଗରେ ଯାଉଥିବାର ଦେଖିଲେ ତାଙ୍କ ମନ, ପ୍ରାଣ ଦୁଃଖ ଯନ୍ତ୍ରଣାରେ ପୂର୍ଣ୍ଣ ହେଉଥିଲା । ତାଙ୍କ ନିକଟକୁ ଗମନ କରି ଦୋଷ ଦୁର୍ବଳତା ସମ୍ପର୍କରେ ବୁଝାଉଥିଲେ । ଯଦି ସେ ମାନୁ ନଥିଲେ, ତେବେ ତାଙ୍କ ସଙ୍ଗେ ଯୁଦ୍ଧ କରିବାପାଇଁ ଅଗ୍ରସର ହେଉଥିଲେ ।

ବ୍ୟୂହ-ରଚନା କୌଶଳ ତାଙ୍କର ବିଚିତ୍ର ଥିଲା । ଏହିସବୁ କାର୍ଯ୍ୟରେ ତାଙ୍କର ବହୁ ଦିଗ୍‌ଦର୍ଶିତା ଅତୁଳନୀୟ । ପାଣ୍ଡବ ଏବଂ କୌରବମାନଙ୍କର ଗୁରୁ ଦ୍ରୋଣାଚାର୍ଯ୍ୟ, ଅଗସ୍ତ୍ୟଙ୍କର ଶିଷ୍ୟ ଥିଲେ । ତାଙ୍କଠାରୁ ଶିକ୍ଷାପାଇ ଲକ୍ଷ୍ୟବିନ୍ଧାରେ ଦ୍ରୋଣାଚାର୍ଯ୍ୟ ପାରଙ୍ଗମ ଥିଲେ । ରାଜା ଦ୍ରୁପଦ ମଧ୍ୟ ଅଗସ୍ତ୍ୟଙ୍କ ଠାରୁ ଯୁଦ୍ଧବିଦ୍ୟା ଶିଖିବାପାଇଁ ଦୀକ୍ଷା ନେଇଥିଲେ ।

ବିବାହପରେ ଅଗସ୍ତ୍ୟ ଚତୁର୍ଦ୍ଦିଗରେ ଭ୍ରମଣ କରିବାରେ ଲାଗିଲେ । ତାଙ୍କ ସଙ୍ଗେ ଲୋପାମୁଦ୍ରା ମଧ୍ୟ ଥାଆନ୍ତି । ଯେଉଁଠାକୁ ଯାଉଥିଲେ ସେଠାରେ ଧର୍ମ ଉପଦେଶ ଦେଉଥିଲେ । ଦୁଃଖ, କଷ୍ଟରୁ ବଞ୍ଚାଇବାପାଇଁ ପ୍ରଯତ୍ନ ମଧ୍ୟ କରୁଥିଲେ । ତାଙ୍କର ଏହି କାର୍ଯ୍ୟ ଦେଖି ଲୋକେ ତାଙ୍କ ପ୍ରତି ଆକର୍ଷିତ ହେଲେ । ଯେଉଁ-

ଠାକୁ ସେ ଗଲେ ସେଠାରେ ପୂଜା ପାଇଲେ । ଶ୍ରଦ୍ଧା ଏବଂ ସମ୍ମାନ ଜ୍ଞାପନ କରିବାପାଇଁ ତାଙ୍କ ପାଖେ ଲୋକ ଭିଡ଼ ହେଉଥିଲେ ।

ତାଙ୍କର ଉଦାର ମନୋବୃତ୍ତି ଓ ପରୋପକାର ସମସ୍ତଙ୍କୁ ପ୍ରଭାବିତ କଲା । ରାଜା, ପ୍ରଜା, ଋଷି, ତପସ୍ବୀ ସମସ୍ତଙ୍କ ନିକଟରେ ସେ ଆଦରଣୀୟ ହୋଇପାରିଥିଲେ । କାରଣ ତାଙ୍କ ହୃଦୟ-କନ୍ଦରରେ ଅପୂର୍ବ ଗୁଣର ବିଭୂତି ପରିପୂର୍ଣ୍ଣ ଥିଲା ।

ଅଗସ୍ତ୍ୟଙ୍କ ଜୀବନରେ ଦୁଇଟି ଆଶ୍ଚର୍ଯ୍ୟ କଥା ଦେଖିବାକୁ ମିଳେ । ଗୋଟିଏ ହେଉଛି ସମୁଦ୍ରର ସମୁଦାୟ ଜଳକୁ ପାନ କରିବା, ଅନ୍ୟଟି ହେଉଛି ବିନ୍ଧ୍ୟାଚଳ ପର୍ବତର ବୃଦ୍ଧିକୁ ରୋକିବା । ବିନ୍ଧ୍ୟାଚଳ ପର୍ବତ ସମ୍ପର୍କରେ ପୁରାଣରେ ଏକ ସୁନ୍ଦର କାହାଣୀ କୁହାଯାଇଛି ।

ଏକଦା ବିନ୍ଧ୍ୟାଚଳ ପର୍ବତ ମନରେ ଅଭିମାନ ଏବଂ ଅହଂଭାବ ସୃଷ୍ଟି ହେଲା । ସେ ଭାବିଲା—ମୁଁ ଅଧିକ ଉଚ୍ଚ ହୋଇ ସୂର୍ଯ୍ୟଙ୍କ ରାସ୍ତାକୁ ମଧ୍ୟ ବନ୍ଦ କରିଦେଇପାରିବି । ତାଙ୍କର ଗତିରୋଧ କରିଦେଲେ ଶକ୍ତିଶାଳୀ ପରିଆଁ ଛୁଡ଼ିଯିବ ।

ତା'ପରେ ସେ ଉପରକୁ ବୃଦ୍ଧି ପାଇବାରେ ଲାଗିଲା । ତାହାର ଏ କାର୍ଯ୍ୟ ଦେଖି ଚତୁର୍ଦ୍ଦିଗରେ ଏକପ୍ରକାର କୋଳାହଳ ସୃଷ୍ଟି ହେବାରେ ଲାଗିଲା । ଦେବଗଣ, ମୁନି-ଋଷି, ମନୁଷ୍ୟ ସମସ୍ତେ ବ୍ୟାକୁଳ ଚକିତ ହେଲେ । ବିନ୍ଧ୍ୟାଚଳର ଏହି ଜିଦ୍‌ଖୋର ସ୍ୱଭାବକୁ କେମିତି ପରିବର୍ତ୍ତନ କରାଯିବ ସେଥିପାଇଁ ଅନ୍ୟ ଉପାୟ ନ ଦେଖି ଦେବତାମାନେ ଅଗସ୍ତ୍ୟଙ୍କ ନିକଟକୁ ଗଲେ । କାରଣ ବିନ୍ଧ୍ୟାଚଳ ତାଙ୍କର ଶିଷ୍ୟ ଥିଲା ।

ସେତେବେଳକୁ ଅଗସ୍ତ୍ୟ କାଶୀନଗରୀରେ ରହୁଥାନ୍ତି । ଦେବତାମାନଙ୍କ ପ୍ରାର୍ଥନା ଶୁଣି ସେଠାରୁ ଆସିଲେ । ରାସ୍ତାରେ ପଡ଼ିଲା ବିନ୍ଧ୍ୟାଚଳ ପର୍ବତ । ଗୁରୁ ଆସୁଥିବାର ଦେଖି ସେ ମୁଣ୍ଡ ନୁଆଇଁ ପ୍ରଣାମ ଜଣାଇଲା ।

ଅଗସ୍ତ୍ୟ ତାକୁ ଆଶୀର୍ବାଦ ଦେଇ କହିଲେ, ମୁଁ ବର୍ତ୍ତମାନ ଯାଉଛି । ମୁଁ ଫେରିବା ପର୍ଯ୍ୟନ୍ତ ତୁ ଏମିତି ଏଠାରେ ମୁଣ୍ଡ ନୁଆଇଁ ପଡ଼ିଥିବୁ । ଗୁରୁଙ୍କ ଆଦେଶ···

ବାଧ୍ୟହୋଇ ବିନ୍ଧ୍ୟାଚଳ ଗୁରୁଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ମୁଣ୍ଡ ନୁଆଇଁ ପଡ଼ିରହିଲା । ଅଗସ୍ତ୍ୟ ସେଠାରୁ ଦକ୍ଷିଣ ଦିଗକୁ ଯାଇ ଫେରିଲେ ନାହିଁ । ବିନ୍ଧ୍ୟାଚଳ ସେହିରୂପେ ଯେମିତିକୁ ସେମିତି ପଡ଼ିରହିଛି ।

ଅଗସ୍ତ୍ୟ କାଶୀ ନଗରୀରୁ ସୋମବାର ଦିନ ବାହାରିଥିଲେ । ପୁନର୍ବାର ସେ ଆଉ ସେଠାକୁ ଫେରିଲେ ନାହିଁ, ତେଣୁ କାଶୀରେ ଆଜି ମଧ୍ୟ ଏହି କଥାଟି ପ୍ରଚଳିତ ଯେ, ଯେଉଁମାନେ ସୋମବାର ଦିନ କାଶୀଠାରୁ ଯାତ୍ରା ଆରମ୍ଭ କରନ୍ତି ସେମାନେ ଆଉ କାଶୀ ନଗରୀକୁ ଲେଉଟି ପାରନ୍ତି ନାହିଁ ।

ଅଗସ୍ତ୍ୟଙ୍କ ସମ୍ବନ୍ଧରେ ଆଉ ଏକ ବିଚିତ୍ର କିମ୍ବଦନ୍ତୀ ମଧ୍ୟ ଶୁଣାଯାଏ । ତାଙ୍କ ସମୟରେ ଦୁଇ ଭଉଣୀ ବିକଟାଳ ରାକ୍ଷସ ଜନ୍ମ ହୋଇଥିଲେ । ସେମାନଙ୍କ ନାମ ଥିଲା—ଆତାପୀ, ବାତାପୀ ଓ ଇଲ୍ଲା । ତିନିଜଣଯାକ ବଡ଼ ମାୟାବୀ ଏବଂ କୁଚକ୍ରୀ ଥିଲେ । ଫଳ, ଫୁଲ ଏବଂ ଯେକୌଣସି ବସ୍ତୁ ସେମାନେ ଇଚ୍ଛା କରୁଥିଲେ, ଠିକ୍

ସେହି ରୂପରେ ପରିବର୍ତ୍ତିତ ହୋଇପାରୁଥିଲେ । ତାଙ୍କ ଭିତରୁ ଜଣେ ଫଳର ରୂପ ଧାରଣ କରେ । ଅନ୍ୟ ଜଣେ ସେହି ଫଳକୁ ନେଇ ଋଷିଙ୍କ ନିକଟକୁ ଯାଏ । ଏହା ଫଳ ରୂପରେ ଏକ ରାକ୍ଷସ ବୋଲି ଋଷି ଆଦୌ ଜାଣିପାରନ୍ତି ନାହିଁ । ତାକୁ ଆନନ୍ଦରେ ଭକ୍ଷଣ କରନ୍ତି । ଖାଇସାରିବା ପରେ ବାହାରେ ଥିବା ରାକ୍ଷସ ତା' ନାମ ଧରି ଡାକେ ।

ଫୁଲରୂପଧାରୀ ରାକ୍ଷସ, ଅନ୍ୟ ରାକ୍ଷସର ପାଟି ଶୁଣିବା ମାତ୍ରେ ଋଷିଙ୍କ ପେଟ ଫଟେଇ ବାହାରକୁ ଚାଲିଆସେ । ଏହିପରି ଭାବେ ଏ ତିନି ଜଣ ରାକ୍ଷସ ଅସୁମାରି ମୁନି-ଋଷିଙ୍କର ସର୍ବନାଶ କରିଛନ୍ତି । ଚତୁର୍ଦ୍ଦିଗରେ ଦୁଃଖ ଏବଂ ଆତଙ୍କର ଏକ ଗଭୀର ଛାୟା ଖେଳିଯାଏ ।

ଏମାନଙ୍କର ଉତ୍ପାତ ବିଷୟରେ ଅଗସ୍ତ୍ୟ ଶୁଣିବାକୁ ପାଇଲେ । ମନରେ ତାଙ୍କର ଘୋର ଦୁଃଖ ଜାତ ହେଲା । ସେ ନିଜେ ଏହି ରାକ୍ଷସଙ୍କ ନିକଟକୁ ଗଲେ । ରାକ୍ଷସମାନେ ତାଙ୍କ ସାଥିରେ ମଧ୍ୟ ସେହିଭଳି ଅଭିନୟ କଲେ, କିନ୍ତୁ ସମୁଦ୍ରକୁ ଶୋଷିଣ କରି-ପାରିଥିବା ଅଗସ୍ତ୍ୟଙ୍କୁ ଅବା ଧ୍ୱଂସ କରିବାକୁ ଏମାନେ କିଏ ? ତାଙ୍କ ଶକ୍ତି ସମ୍ମୁଖରେ ଏହି ରାକ୍ଷସ ତିନିଜଣ ଅତି ହୀନ, ନିଷ୍ପ୍ରଭ । ସେହି ତିନି ରାକ୍ଷସଙ୍କୁ ଗୋଟିଏ ଗୋଟିଏ କରି ଫଳ ରୂପରେ ଭକ୍ଷଣ କରି ସେ ହଜମ କରିଦେଲେ । ଏମାନେ ଧ୍ୱଂସ ପାଇବାରୁ ଚତୁର୍ଦ୍ଦିଗରେ ସମସ୍ତେ ଆଶ୍ୱସ୍ତ ହେଲେ ।

ଶ୍ରୀରାମଚନ୍ଦ୍ର ବନବାସ କରିବା ସମୟରେ ଅଗସ୍ତ୍ୟଙ୍କ ଆଶ୍ରମକୁ ଯାଇଥିଲେ । ସେତେବେଳକୁ ଅଗସ୍ତ୍ୟ ଦଣ୍ଡକାରଣ୍ୟ ଠାରେ ରହୁଥା'ନ୍ତି ।

ଲୋକଙ୍କ ମୁଖରୁ ଶୁଣାଯାଏ, ସେଠାରେ ଦଣ୍ଡକ ନାମରେ ଜଣେ ରାଜା ଥିଲେ । ତାଙ୍କ ଶାସନରେ ସମସ୍ତେ ଥରହର ହେଉଥାନ୍ତି । ରାଜା ଦଣ୍ଡକ ବଡ଼ କ୍ରୂର ଏବଂ ସ୍ୱେଚ୍ଛାଚାରୀ ଥିଲେ । ନୀତି, ଅନୀତି ଆଦି ପ୍ରତି ତାଙ୍କର ଆଦୌ ଦୃଷ୍ଟି ନଥିଲା । ଇଚ୍ଛାହେଲେ ଦୋଷୀ, ନିର୍ଦ୍ଦୋଷ ସମସ୍ତେ ଦଣ୍ଡ ପାଉଥିଲେ । ଯେଉଁଠି ଯାହା ତାଙ୍କ ମନକୁ ପାଉଥିଲା ତାକୁ ଜୋର ଜବରଦସ୍ତି ନେଇଆସୁଥିଲେ ।

ସେତେବେଳେ ମହର୍ଷି ଭୃଗୁ ସେଠାରେ ରହୁଥା'ନ୍ତି । ରାଜାଙ୍କର ଏହି ଅତ୍ୟାଚାରର କଥା ସେ ଶୁଣିବାକୁ ପାଇଲେ । ତାଙ୍କ ସ୍ୱେଚ୍ଛାଚାରିତା କଥା ଶୁଣି ମନରେ ଅସ୍ଥିର ହୋଇ ସେ ରାଜା ଦଣ୍ଡକଙ୍କୁ ଅଭିଶାପ ଦେଲେ । ତା' ସହ କ୍ରୋଧରେ ବିକଟାଳ ଜ୍ୱାଳାରେ ତାଙ୍କ ଦେଶ ଏବଂ ଦେଶବାସୀଙ୍କୁ ମଧ୍ୟ ଭସ୍ମ କରିଦେଲେ । ସେହିଦିନ ଠାରୁ ସେ ସ୍ଥାନର ନାମ ଦଣ୍ଡକାରଣ୍ୟ ହୋଇଅଛି ।

ଅଗସ୍ତ୍ୟ ବିନ୍ଧ୍ୟାଚଳ ପର୍ବତକୁ ଡେଇଁ ଯେତେବେଳେ ଦକ୍ଷିଣ ଦିଗ ଆଡ଼କୁ ଅଗ୍ରସର ହେଲେ, ସେତିକିବେଳେ ଏଣେ ତେଣେ ପର୍ଯ୍ୟଟନ କରିସାରି ଏହି ସ୍ଥଳୀକୁ ଆସିଲେ ।

ଦଣ୍ଡକାରଣ୍ୟ ତାଙ୍କ ଆଶ୍ରମ ସକାଶେ ଉପଯୁକ୍ତ ଥିଲା, କିନ୍ତୁ ତାଙ୍କର ଆବଶ୍ୟକୀୟ ବସ୍ତୁର ଅଭାବ ସେ ଅନୁଭବ କଲେ ।

କାରଣ ଘଞ୍ଚ-ଲଟା ପରିପୂର୍ଣ୍ଣ ବନାମ୍ମ ମଧ୍ୟରେ ନିର୍ଜ୍ଜନତାର ଅଭାବ ନାହିଁ । ତେବେ ପ୍ରାଣ ଧାରଣର ମାଧ୍ୟମ ଜଳ ନଥିଲା । ଅରଣ୍ୟର ଅନେକ ସ୍ଥାନ ଶୁଷ୍କ ହୋଇ ପଡ଼ିଥିଲା । ପଶୁ ପକ୍ଷୀ ମଧ୍ୟ ବାସ କରୁ ନଥିଲେ, ତେଣୁ ଏଥିନିମନ୍ତେ ଅଗସ୍ତ୍ୟ ସ୍ୱର୍ଗ ରାଜ୍ୟକୁ ଗମନ କଲେ । ସେଠାରୁ ଅମୃତ ଆଣି ଏଇ ମୃତପ୍ରାୟ ଭୂମିକୁ ପୁନର୍ବାର ଜୀବନ ପ୍ରଦାନ କଲେ ।

ଦଣ୍ଡକାରଣ୍ୟ କମନୀୟ ରୂପଧାରଣ କଲା । ସ୍ୱଚ୍ଛ ଝରଣାର ଜଳ କଳକଳ ହୋଇ ବହିଲା । ପଶୁ ପକ୍ଷୀ ଆନନ୍ଦରେ ବିଚରଣ କରିବାରେ ଲାଗିଲେ । ବନ୍ୟ ପୁଷ୍ପରାଜିରେ ଚତୁର୍ଦ୍ଦିଗ ସୁରଭିତ ହେଲା । ତା'ପରେ ସେଠାକୁ ଅନେକ ମୁନି-ଋଷି ଆସି ଆଶ୍ରମ ନିର୍ମାଣ କରି ବାସ କରିବାରେ ଲାଗିଲେ ।

ଶ୍ରୀରାମଚନ୍ଦ୍ର ଏଠାରୁ ଦଣ୍ଡକାରଣ୍ୟକୁ ଆସି ଅନେକଦିନ ବାସ କରିଥିଲେ । ମୁନି-ଋଷିଗଣ ତାଙ୍କ ସମ୍ପର୍ଶରେ ଆସି ନିଜକୁ ଭାଗ୍ୟବାନ ମନେକଲେ । ସେଠାକାର ନୈସର୍ଗିକ ଶୋଭା ରାମଚନ୍ଦ୍ରଙ୍କ ପ୍ରାଣକୁ ମୁଗ୍ଧ କରିଥିଲା । ଅଗସ୍ତ୍ୟ ତାଙ୍କୁ ଏଠାରେ ଉପ... ...ଧ ଦେଇଥିଲେ ।

...ଗସ୍ତ୍ୟଙ୍କୁ ସପ୍ତର୍ଷି ମଧ୍ୟରେ ଗଣନା କରାଯାଇଥାଏ । କେବଳ ସେତିକି ... ନୁହେଁ, ସପ୍ତର୍ଷିଙ୍କ ମଧ୍ୟରେ ତାଙ୍କର ସ୍ଥାନ ଶୀର୍ଷରେ । ତାଙ୍କ ... ଶକ୍ତିମାନ ବ୍ୟକ୍ତିଭାବେ ତାଙ୍କୁ ଶ୍ରେଷ୍ଠ ଆସନ ପ୍ରଦାନ କରନ୍ତି

ଏକଦା ରାଜା ନହୁଷ ନିଜ ତପସ୍ୟା ବଳରେ ଇନ୍ଦ୍ରପଦ ପ୍ରାପ୍ତ ହୋଇଥିଲେ । ପଦବୀର ମୋହ ଏବଂ ଗର୍ବ ସର୍ବଦା ରହିଛି । ନହୁଷ ଇନ୍ଦ୍ରପଦ ପାଇ ଭଲ-ମନ୍ଦ ସବୁ କିଛି ଭୁଲିଗଲେ । ସେ ସ୍ୱେଚ୍ଛାଚାରୀ ହୋଇପଡ଼ିଲେ । ନିଜକୁ ସଂସାରର ସର୍ବଶ୍ରେଷ୍ଠ ମନେକରିବାରେ ଲାଗିଲେ । ଯେ କେହି ହେଲେ ମଧ୍ୟ ତାଙ୍କୁ ତୁଚ୍ଛ ଏବଂ ହୀନ ମଣିଲେ ।

ନିଜର ଏହି ଅହଂଭାବ ଅନୁସାରେ ଦିନେ ସେ ଇନ୍ଦ୍ରାଣୀଙ୍କୁ ନିଜ ପାଖକୁ ଡକାଇଲେ । ଏହାଦେଖି ଇନ୍ଦ୍ରାଣୀ ଖିନ୍ନଚିତ୍ତା ହୋଇପଡ଼ିଲେ । ବୃହସ୍ପତିଙ୍କୁ ଡକାଇ ସେ ନିଜର ଦୁଃଖ କାହାଣୀ କହିଲେ ।

ନହୁଷଙ୍କ ସ୍ୱେଚ୍ଛାଚାରିତା ସମ୍ପର୍କରେ ବୃହସ୍ପତି ପୂର୍ବରୁ ଶୁଣିଥିଲେ । ସେ କହିଲେ : ମୁଁ ନହୁଷର ଅନ୍ୟାୟ ଅତ୍ୟାଚାରକୁ ଭଲରୂପେ ଜାଣେ । ଆପଣ କାହା ଦ୍ୱାରା ଖବର ପଠେଇ ଦିଅନ୍ତୁ—"ମୁଁ ଯାଇପାରିବି ନାହିଁ । ତୁମେ ସପ୍ତର୍ଷିଙ୍କ ସାହାଯ୍ୟରେ ପାଲିଙ୍କି ନେଇ ମୋ' ପାଖକୁ ଆସ ।"

ଭଲ ମନ୍ଦ ଜ୍ଞାନ ନହୁଷଙ୍କର ନଥିଲା । ସେ ଇନ୍ଦ୍ରାଣୀଙ୍କ ନିକଟରୁ ଖବର ପାଇ ସଙ୍ଗେ ସଙ୍ଗେ ସପ୍ତର୍ଷିଙ୍କୁ ନିଜ ପାଖକୁ ଡକାଇଲେ । ସେମାନଙ୍କ ଦ୍ୱାରା ପାଲିଙ୍କି ବୋହି ସେ ଇନ୍ଦ୍ରାଣୀଙ୍କ ନିକଟକୁ ଗମନ କଲେ ।

ପାଲିଙ୍କି ବୋହିବା କାମ ସପ୍ତର୍ଷି କେବେ କରି ନଥିଲେ । ସ୍କନ୍ଧରେ ବୋହି ଚାଲିବା ଅଭ୍ୟାସ ସେମାନଙ୍କର ନାହିଁ । ଅଳ୍ପ ସମୟ

ପରେ ସେମାନେ ସମ୍ପୂର୍ଣ୍ଣ କ୍ଳାନ୍ତ ଶ୍ରାନ୍ତ ହୋଇପଡ଼ଲେ । ସେମାନଙ୍କ ପାଦ ଆଗକୁ ଆଉ ଚାଲୁନଥିଲା ନାହିଁ । ତେଣେ ବିଳମ୍ବ ହେବାରେ ଲାଗିଛି । ନହୁଷଙ୍କର ଉତ୍କଣ୍ଠିତ ମନ ଅତୀବ ବ୍ୟାକୁଳ । ଖୁବ୍ ବିଳମ୍ବ ହେବାର ଦେଖି ସେ ସପ୍ତର୍ଷିଙ୍କ ଉପରେ ଉତ୍ତେଜିତ ହୋଇ ପଡ଼ିଲେଣି ।

ସେମାନଙ୍କୁ ଚଞ୍ଚଳ ଚାଲିବା ନିମନ୍ତେ ନହୁଷ ହସ୍ତରେ 'ସର୍ପ-ସର୍ପ' କହିବାରେ ଲାଗିଥାନ୍ତି । ନହୁଷଙ୍କର ଏ ଅତ୍ୟାଚାର ଦେଖି ସପ୍ତର୍ଷିଙ୍କ ମନରେ ଭୟଙ୍କର କ୍ରୋଧ ଜାତହେଲା, କିନ୍ତୁ ସେମାନେ କିଛି କହିପାରିଲେ ନାହିଁ । ବଡ଼ କଷ୍ଟରେ ପାଦେ ପାଦେ ଆଗେଇ ଚାଲିଥା'ନ୍ତି ।

ସେମାନଙ୍କ ଭିତରେ ମହର୍ଷି ଅଗସ୍ତ୍ୟ ମଧ୍ୟ ପାଲିଙ୍କି ବୋହି ଚାଲିଥାଆନ୍ତି, କିନ୍ତୁ ନହୁଷଙ୍କର ଏ ପ୍ରକାର ଅକଥନୀୟ ବର୍ବରତାକୁ ସେ ବରଦାସ୍ତ କରିପାରିଲେ ନାହିଁ । କ୍ରମେ ପାଲିଙ୍କି ବୋହିବା ଅସହ୍ୟ ହେଲା । ଚାଲିଚାଲି ସେ ଖୁବ୍ କ୍ଳାନ୍ତ । ଶେଷରେ ଅନ୍ୟ ଉପାୟ ନଦେଖି ସେ ନହୁଷଙ୍କୁ ଅଭିଶାପ ଦେଲେ—ତୁମେ ତୁରନ୍ତରେ ସାପ ପାଲଟିଯାଅ···

ମହର୍ଷି ଅଗସ୍ତ୍ୟଙ୍କ କ୍ଷୁବ୍ଧ ଉତ୍ତେଜିତ ହୃଦୟର ଅଭିଶାପ ବ୍ୟର୍ଥ ହେବାର ନୁହେଁ । ତତ୍କ୍ଷଣାତ୍ ନହୁଷ ସାପ ପାଲଟିଗଲେ । ତାଙ୍କର ଅହଂଭାବ ସମୁଦାୟ ଗର୍ବ-ଅଭିମାନ ସଙ୍ଗେ ସଙ୍ଗେ ଧ୍ୱଂସ ପାଇଗଲା ।

ମହର୍ଷି ଅଗସ୍ତ୍ୟଙ୍କର ସମୁଦାୟ ଜୀବନ ଏହିଭଳି ଅଲୌକିକ ଘଟଣାରେ ପରିପୂର୍ଣ୍ଣ । ସେ ବାସ୍ତବରେ ଜଣେ ଅଲୌକିକ,

ସର୍ବଶକ୍ତିମାନ ପୁରୁଷ ଥିଲେ । ତାଙ୍କର ସାଧନା, ସଂସାରର ମଙ୍ଗଳ ଉଦ୍ଦେଶ୍ୟରେ ନିୟୋଜିତ ହୋଇଥିଲା । ଅନ୍ୟାୟ, ଅତ୍ୟାଚାରକୁ ଦମନ କରିବାପାଇଁ ସେ ନିଜେ ପ୍ରଚୁର ଉଦ୍ୟମ କରି ତାହା କାର୍ଯ୍ୟକାରୀ କରୁଥିଲେ । ହିଂସା, ଘୃଣା ଓ ଚକ୍ରାନ୍ତ ଆଦି କାର୍ଯ୍ୟକୁ ସେ ଆଦୌ ପସନ୍ଦ କରୁ ନଥିଲେ, ତେଣୁ ଭଗବାନ ରାମଚନ୍ଦ୍ର ମଧ୍ୟ ଅଗସ୍ତ୍ୟଙ୍କର ଏହି ଗୁଣାବଳୀ ଦ୍ୱାରା ପ୍ରଭାବିତ ହୋଇ ତାଙ୍କୁ ଆନ୍ତରିକ ଅଭ୍ୟର୍ଥନା ଜଣାଉଥିଲେ । ତାଙ୍କ ଉପଦେଶାବଳୀକୁ ଗ୍ରହଣକରି ସମ୍ମାନ ଦେଉଥିଲେ ।



# ମହାରାଜ ଯଜାତ

ବହୁବର୍ଷ ପୂର୍ବେ ଭାରତବର୍ଷରେ ଜଣେ ମହାପ୍ରତାପୀ ରାଜା ରାଜତ୍ୱ କରୁଥିଲେ । ତାଙ୍କ ନାମ ବାହୁକ । ସେ ଖୁବ୍ ଐଶ୍ୱର୍ଯ୍ୟଶାଳୀ ଓ ପରାକ୍ରମୀ ଥିଲେ । ପ୍ରଜାମାନଙ୍କର ଦୁଃଖ କଷ୍ଟ ବୁଝି ଯଥାବିଧି ରାଜ୍ୟ ଶାସନ କରିବା ସଙ୍ଗେସଙ୍ଗେ ଈଶ୍ୱରଙ୍କ ପ୍ରତି ପୂଜା ଏବଂ ଭକ୍ତି ମଧ୍ୟ କରୁଥିଲେ । ଭଗବାନଙ୍କୁ ପୂଜା କରିବା ତାଙ୍କର ଏକପ୍ରକାର ପ୍ରତିଦିନର ଅଭ୍ୟାସ ଥିଲା ।

କିଛିଦିନ ପରେ ରାଜ୍ୟ ଏବଂ ସିଂହାସନ ପ୍ରତି ମାୟା-ମମତା ତାଙ୍କର କଟିଗଲା । ସଂସାରପ୍ରତି ମନରେ ବୈରାଗ୍ୟ ଭାବ ଉଦୟ ହେଲା । ଦିନେ ନିଜର ଅଭିଳାଷ ଅନୁସାରେ ରାଜା ବାହୁକ, ରାଜ୍ୟ ଓ ରାଜପ୍ରାସାଦ ଛାଡ଼ି ତପସ୍ୟା କରିବା ନିମନ୍ତେ ଅରଣ୍ୟକୁ ଚାଲିଗଲେ ।

କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଅନ୍ୟପ୍ରକାରର । ଅରଣ୍ୟରେ ରାଜା ବାହୁକଙ୍କର ଦେହାବସାନ ଘଟିଲା । ଏହା ଶୁଣିବାମାତ୍ରେ ରାଜପ୍ରାସାଦରେ ଶୋକର ଛାୟା ଖେଳିଗଲା । ରାଣୀ ଗଭୀର ଦୁଃଖ ଏବଂ ଯନ୍ତ୍ରଣାରେ ପତିଙ୍କ ଅନୁଗମନ କରିବାପାଇଁ ଇଚ୍ଛା ପ୍ରକାଶ କଲେ, କିନ୍ତୁ ସେତେବେଳକୁ ସେ ଗର୍ଭବତୀ । ମହାତ୍ମା ଔର୍ବ ରାଣୀଙ୍କୁ ଏ କାର୍ଯ୍ୟରୁ ନିବୃତ୍ତ କରାଇଲେ ।

ରାଜାଙ୍କର ଆହୁରି କେତେଜଣ ରାଣୀ ମଧ୍ୟ ଥିଲେ । ଏ ରାଣୀ ଗର୍ଭବତୀ ଥିବାର ସମ୍ବାଦ ସେମାନେ ଶୁଣି, ହିଂସାରେ ଜଳି ଉଠିଲେ । ସମସ୍ତେ ମିଶି ଠିକ କଲେ, ରାଣୀଙ୍କୁ ବିଷଦେଇ ମାରିଦେବେ !

ବିଶ୍ୱାସଘାତକତା କରି ସମସ୍ତେ ଏହି ରାଣୀଙ୍କୁ ବିଷ ପିଆଇ ଦେଲେ···ବିଷ ଦେବାର କାରଣ ଥିଲା ରାଣୀର ମୃତ୍ୟୁ ହେବ ଏବଂ ତା' ସାଥିରେ ଗର୍ଭସ୍ଥ ଶିଶୁର ମଧ୍ୟ ସର୍ବନାଶ ଘଟିବ···

କିନ୍ତୁ ଭଗବାନଙ୍କ ଇଚ୍ଛା ସ୍ୱତନ୍ତ୍ର ! ଶିଶୁର ମୃତ୍ୟୁ ହେଲାନାହିଁ କି ରାଣୀ ମଧ୍ୟ ମୃତ୍ୟୁବରଣ କଲେ ନାହିଁ !

ଶିଶୁଟି ଭୂମିଷ୍ଠ ହେଲା···ଶିଶୁଟି ଭବିଷ୍ୟତରେ ପ୍ରତାପଶାଳୀ ହୋଇ କୀର୍ତ୍ତି ଅର୍ଜନ କଲା । ସେହି ବାଳକ ହିଁ ପରେ ମହାରାଜ ସଗର ନାମରେ ପରିଚିତ ହେଲା ।

ବାଳକ ସଗର ପ୍ରତାପଶାଳୀ ଥିଲେ, କିନ୍ତୁ ମାତୃ ସୁଖ ତାଙ୍କ ଭାଗ୍ୟରେ ନଥିଲା । ସେ ଭୂମିଷ୍ଠ ହେବାର କିଛିଦିନ ପରେ ତାଙ୍କ ମାତାଙ୍କର ଦେହାନ୍ତ ଘଟିଲା । ବର୍ତ୍ତମାନ ତାଙ୍କ ଲାଳନପାଳନର ଦାୟିତ୍ୱ ମହାତ୍ମା ଔର୍ବଙ୍କ ଉପରେ ପଡ଼ିଲା ।

ସେ ଖୁବ୍ ଶ୍ରଦ୍ଧା ଏବଂ ସହାନୁଭୂତିର ସହ ତାଙ୍କୁ ଲାଳନ-ପାଳନ କଲେ । କିଛିଏ ବଡ଼ ହେବା ପରେ ତାଙ୍କୁ ବିଭିନ୍ନ ପ୍ରକାର ଶିକ୍ଷା ମଧ୍ୟ ଦେଲେ । ପିଲାଦିନରୁ ସେ ତୀକ୍ଷ୍ଣବୁଦ୍ଧି ସମ୍ପନ୍ନ ଥିଲେ ।

ମହାତ୍ମା ଔର୍ବଙ୍କଠାରୁ ଯାହା ଶୁଣୁଥିଲେ ସଙ୍ଗେସଙ୍ଗେ ତାକୁ ମନେରଖି ପାରୁଥିଲେ । ଅଳ୍ପଦିନ ପରେ ଶିକ୍ଷାଦୀକ୍ଷାରେ ସେ ଧୁରନ୍ଧର ହୋଇଉଠିଲେ ।

ସେ ସମୟରେ ଏକଦା ଚନ୍ଦ୍ରଗ୍ରହଣ ହେଲା । ବାରଣାସୀଠାରେ ସୁରଅାଡ଼୍ସାଗର ସଦୃଶ ଲୋକଙ୍କର ଭିଡ଼ ଜମିଉଠିଲା । ମହାତ୍ମା ଔର୍ବ ମଧ୍ୟ ବାଳକ ସଗରଙ୍କୁ ଧରି ବାରଣାସୀ ଗଲେ । ଅନେକ ମୁନିଋଷି ମଧ୍ୟ ସେଠାରେ ଏକତ୍ରିତ ହୋଇଥିଲେ ।

ସହସା ବଶିଷ୍ଠଙ୍କ ଦୃଷ୍ଟି ଏହି ବାଳକଟିର ଦୀପ୍ତ ମୁଖମଣ୍ଡଳ ଉପରେ ପଡ଼ିଲା । ସେ ଆଶ୍ଚର୍ଯ୍ୟଚକିତ ହେଲେ । ଅନିମେଷ ଚାହାଣିରେ ସଗରଙ୍କୁ ଚାହିଁ ସେ ଔର୍ବଙ୍କୁ ପଚାରିଲେ—ଏ ବାଳକଟି କିଏ ? ଏହାର ପିତାଙ୍କ ନାମ କ'ଣ ?

ଔର୍ବ ଉତ୍ତର ଦେଲେ, ଏ ମୋ' ଶିଷ୍ୟ ବାହୁକଙ୍କ ପୁତ୍ର । ତାକୁ ମୁଁ ମଧ୍ୟ ଶିକ୍ଷା ଦେଇଛି । ମୁଁ ଚାହେଁ ସୂର୍ଯ୍ୟବଂଶର ପତାକା ପୁନର୍ବାର ଉଡ଼ୁ । ପୁଣି ସେହି ପବିତ୍ର ବଂଶର ମର୍ଯ୍ୟାଦା ଜଗତ ବକ୍ଷରେ ଶୋଭାପାଉ, ତେଣୁ ଏହି ବାଳକକୁ କୌଣସି ପ୍ରକାରେ ରାଜସିଂହାସନ ଉପରେ ବସାଇବା ଉଚିତ ।

ମହାତ୍ମା ଔର୍ବଙ୍କ କଥା ଶୁଣି ବଶିଷ୍ଠ ଅତି ଆନନ୍ଦିତ ହେଲେ । ତାଙ୍କୁ ସତେ ଯେମିତି କୌଣସି ମୂଲ୍ୟବାନ ରତ୍ନ ମିଳିଗଲା । ସେଥିପାଇଁ ସେ ଔର୍ବଙ୍କୁ ଧନ୍ୟବାଦ ଦେଲେ । କେବଳ ଧନ୍ୟବାଦ ତ ନୁହେଁ, ବାଳକ ସଗରକୁ ଅଧିକ ଶକ୍ତିଶାଳୀ, ଅଧିକ ପରାକ୍ରମୀ କରି ଗଢ଼ିବାପାଇଁ ଯାଗ-ଯଜ୍ଞ ମଧ୍ୟ ଆରମ୍ଭ କରିଦେଲେ ।

ସେହି ଦିନଠାରୁ ମହର୍ଷି ବଶିଷ୍ଠ, ବାଳକ ସଗରର ମଙ୍ଗଳ କାମନା କଲେ । କାରଣ ସ୍ୱୟଂ ସୂର୍ଯ୍ୟବଂଶର ଶୁଭେଚ୍ଛୁ ଥିଲେ ।

ଯଜ୍ଞ ଚାଲିଥାଏ । ମୁନି-ଋଷିଗଣ ବସି ବେଦମନ୍ତ୍ର ଉଚ୍ଚାରଣ କରୁଥା'ନ୍ତି । ଅକସ୍ମାତ ପ୍ରଖ୍ୟାତଯଶା ପରଶୁରାମଙ୍କର ଆବିର୍ଭାବ

ଘଟିଲା । ସେତେବେଳେ ସେ କେବଳ କ୍ଷତ୍ରିୟମାନଙ୍କୁ ସଂହାର କରିବାରେ ଲାଗିଥାଆନ୍ତି ।

ସହସା ତାଙ୍କର ଦୃଷ୍ଟି ଏହି ବାଳକ ସଗର ଉପରେ ପଡ଼ିଲା । ଦେହ ଭିତରେ ତାଙ୍କର କ୍ରୋଧର ଜ୍ୱାଳା ସୃଷ୍ଟି ହେଲା । ସେ ଅସ୍ଥିର ହୋଇ ପଡ଼ିଲେ । ବାଳକ ସଗରକୁ ହତ୍ୟାକରିବାପାଇଁ ସେ ଆଗେଇ ଆସିଲେ ।

ନିଜର ତୀକ୍ଷ୍ଣ ପାରଶ ଖଣ୍ଡିକୁ ଉଠାଇ କହିଲେ, ମୁଁ କ୍ଷତ୍ରିୟମାନଙ୍କୁ ସଂହାର କରିବାପାଇଁ ବ୍ରତ କରିଛି । ମୋର ଦୁଃଖ ହେଉଛି ଯେ, ଆପଣମାନେ ମୋତେ ଏଥିପାଇଁ ସାହାଯ୍ୟ ନକରି ବରଂ ମୋର ଶତ୍ରୁମାନଙ୍କର ସଂଖ୍ୟା ବୃଦ୍ଧି କରିବାରେ ଲାଗିଛନ୍ତି ।

କିନ୍ତୁ ମହାରାଜ ! ଋଷିଗଣ ଉତ୍ତର ଦେଲେ—ଏହି ବାଳକଟି ବ୍ରାହ୍ମଣମାନଙ୍କର ଏକାନ୍ତ ଭକ୍ତ । ପୂଜା ଏବଂ ଯାଗ-ଯଜ୍ଞ ପ୍ରତି ଏହାର ଯଥେଷ୍ଟ ମମତା ରହିଛି । ଭବିଷ୍ୟତରେ ଏହାରି ସାହାଯ୍ୟରେ ବ୍ରାହ୍ମଣ ସମାଜର ଅନେକ କଲ୍ୟାଣ ମଧ୍ୟ ସାଧିତ ହୋଇ ପାରିବ, ତେଣୁ ତାକୁ ମାରିବା ଉଚିତ ହେବନାହିଁ । ତାକୁ ମାରିଦେଲେ ବ୍ରାହ୍ମଣ ସମାଜର ସର୍ବନାଶ କରିବା ସହିତ ସମାନ ହେବ ।

କିନ୍ତୁ ପରଶୁରାମ କ'ଣ ସହଜରେ ମାନିବା ଲୋକ ? ଆହୁରି ଅନେକ କାକୁତିମିନତି ଋଷିଗଣ କରିବାରେ ଲାଗିଲେ । ତଥାପି ବି ସେ ନାରାଜ । ଶେଷରେ ପରଶୁରାମଙ୍କ ମନରେ ବିଶ୍ୱାସ ସୃଷ୍ଟି କରିବାପାଇଁ, ଋଷିଗଣ ବାଳକ ସଗରକୁ ଜ୍ୱଳନ୍ତ ଅଗ୍ନି କୁଣ୍ଡକୁ ଫିଙ୍ଗାଇଦେଲେ ।

ସମସ୍ତେ ଆଶ୍ଚର୍ଯ୍ୟଚକିତ ! ସଗରର କିଛିହେଲେ କ୍ଷତି ହୋଇ ନାହିଁ । ଯେମିତିକୁ ସେମିତି ସେ ଅଗ୍ନି କୁଣ୍ଡରୁ ବାହାରି ଆସିଲେ । ମନରେ ଲେଶମାତ୍ର ଭୟ, ଭ୍ରାନ୍ତି କି କ୍ରୋଧ ନ ଥିଲା ।

ଏଥର ପରଶୁରାମଙ୍କ ହୃଦୟରେ ସଗରଙ୍କପାଇଁ ଶ୍ରଦ୍ଧା-ଅନୁରାଗ ଜାତ ହେଲା । ସ୍ନେହାକୁଳ ପ୍ରାଣରେ ତାଙ୍କ ସହ ସେ ଆଳାପ କଲେ । କେବଳ ସେତିକି ନୁହେଁ, ସଗରଙ୍କ ରାଜ୍ୟାଭିଷେକ ପାଇଁ ମଧ୍ୟ ସାହାଯ୍ୟ ପ୍ରଦାନ କଲେ ।

କିନ୍ତୁ ଏତେ ସହାନୁଭୂତି, ଏତେ ଶ୍ରଦ୍ଧା ପରେ ମଧ୍ୟ ସଗରଙ୍କ ମନରେ ଶାନ୍ତି ନ ଥିଲା । ସର୍ବଦା ସେ କୌଣସି ଏକ ଚିନ୍ତା ସାଗରରେ ସନ୍ତରଣ କରୁଥିଲେ । ବିଶାଳ ଭୂଖଣ୍ଡର ଅଧୀଶ୍ୱର ହେଲେ—ପ୍ରଜାଗଣଙ୍କ ହିତ ସାଧନ କଲେ । ମୁନି-ଋଷିଗଣଙ୍କ ଆଶୀର୍ବାଦ ଲାଭକଲେ—ତଥାପି ବି ତାଙ୍କ ମନରେ ସୁଖ ନଥିଲା । ସେ ସନ୍ତାନ ସୁଖରୁ ବଞ୍ଚିତ ଥିଲେ । ସେଥିପାଇଁ ଯାଗ-ଯଜ୍ଞ, ଦାନ ଧର୍ମ ଆଦି ମଧ୍ୟ କଲେ, କିନ୍ତୁ ଅନେକଦିନ ବିତିଯିବା ପରେ ମଧ୍ୟ କୌଣସି ସନ୍ତାନ ଦର୍ଶନର ସୁଯୋଗ ଜୁଟିଲା ନାହିଁ ।

ଘୋର ମାନସିକ ଅଶାନ୍ତିରେ ସେ ରାଜକାର୍ଯ୍ୟ ମଧ୍ୟ ସୁରୁଖୁରୁରେ ଚଳାଇ ପାରିଲେ ନାହିଁ । ଶେଷରେ ସ୍ଥିର କରି ଯେ ବନେ ତପସ୍ୟା କରିବାପାଇଁ ହିମାଳୟ ପର୍ବତକୁ ଗ୍ଲାଲିଗଲେ ।

ରାଜ୍ୟ ଅପେକ୍ଷା ନିର୍ଜନ ବନସ୍ଥଳୀ ତାଙ୍କୁ ଏକରକମ ଶାନ୍ତି ପ୍ରଦାନ କଲା । ସେଠାରେ ବହୁତଦିନ ପର୍ଯ୍ୟନ୍ତ ସେ ତପ ସାଧନାରେ

ଲଗି ରହିଲେ । ନିଜ ଶରୀର ପ୍ରତି ମଧ୍ୟ ତାଙ୍କର ଦୃଷ୍ଟି ରହିଲା ନାହିଁ ।

ଶେଷରେ ଦିନେ ଭୃଗୁଋଷି ଯାଇ ସେଠାରେ ପହଞ୍ଚିଲେ । ସଗର ତପସ୍ୟାରେ ମଗ୍ନ ଥାଆନ୍ତି । ତାଙ୍କର ଏକନିଷ୍ଠ ସାଧନା ଦେଖି ଭୃଗୁ ଅତ୍ୟନ୍ତ ଆନନ୍ଦିତ ହେଲେ । ଆନନ୍ଦ ଗଦ୍‌ଗଦ କଣ୍ଠରେ ସେ ରାଜାଙ୍କୁ ଆଶୀର୍ବାଦ ଦେଇ କହିଲେ : ଯାଅ, ତୁମ ରାଣୀଙ୍କ ଗର୍ଭରୁ ଷାଠିଏ ହଜାର ପୁତ୍ର ସନ୍ତାନ ଉତ୍ପନ୍ନ ହେବେ···

ଈଶ୍ୱରଙ୍କ ଇଚ୍ଛାରେ ହିଁ ସବୁ ପରିଚାଳିତ । ନଚେତ୍ ଯେଉଁ ସଗର ମହାରାଜ ଦିନେ ଗୋଟିଏ ପୁତ୍ର ସନ୍ତାନପାଇଁ ଘୋର ଅଶାନ୍ତି ଏବଂ ଦୁଶ୍ଚିନ୍ତାରେ ଜର୍ଜ୍ଜରିତ ହୋଇ ପଡ଼ିଥିଲେ, ତାଙ୍କୁ ପୁଣି ଷାଠିଏ ହଜାର ପୁତ୍ର-ସନ୍ତାନର ବରଦାନ ପ୍ରାପ୍ତି ହେଲା !

ମହାରାଜ ସଗରଙ୍କ ଆନନ୍ଦ କହିଲେ ନ ସରେ । ସାଧନା କାଳର ସମସ୍ତ ଯନ୍ତ୍ରଣା ସେ ଭୁଲିଗଲେ । ଆନନ୍ଦରେ ମଗ୍ନ ହୋଇ ବାହୁଡ଼ି ଆସିଲେ ନିଜ ରାଜଧାନୀକୁ ।

ମହର୍ଷି ଭୃଗୁଙ୍କ ଆଶୀର୍ବାଦ ନିଷ୍ଫଳ ହେବାର ନୁହେଁ । ସମୟ ଅନୁସାରେ ଯଥାବିଧି ତାହା କାର୍ଯ୍ୟକାରୀ ହେଲା···ତାଙ୍କର ପ୍ରଚଣ୍ଡ ଶକ୍ତି ବଳରେ ସଗରଙ୍କର ଷାଠିଏ ହଜାର ପୁତ୍ର ସନ୍ତାନ ଜାତ ହେଲେ । ରାଜପ୍ରାସାଦରେ ପ୍ରଚୁର ଆନନ୍ଦର ଲହରୀ ଖେଳିଉଠିଲା । ରାଜଧାନୀରେ ଯାତ୍ରା-ଉତ୍ସବ ପାଳିତ ହେଲା । ଦୁଃଖୀ-ରଙ୍କୀମାନେ ଭୋଜନ ଏବଂ ବସ୍ତ୍ର ଦାନ ପାଇ ଖୁସି ହେଲେ ।

ମହାରାଜ ସଗର ଏଥର କର୍ମଚଞ୍ଚଳ ହୋଇଉଠିଲେ । ରାଜ୍ୟ ଓ ପ୍ରଜାମାନଙ୍କ ପ୍ରତି ତାଙ୍କ ଦୃଷ୍ଟି ସମ୍ପ୍ରସାରିତ ହେଲା । ଅନେକ ଦିନ ଧରି ରାଜ୍ୟର ଭଲ ମନ୍ଦ ବୁଝି ନ ପାରିବାରୁ ପ୍ରଜାମାନେ ହଇରାଣ ହୋଇ ପଡ଼ୁଥିଲେ, କିନ୍ତୁ ସନ୍ତାନ ପ୍ରାପ୍ତି ପରେ ସେ ପୁଣି ପ୍ରଜାମାନଙ୍କ କାର୍ଯ୍ୟରେ ଲାଗିପଡ଼ିଲେ ।

କିଛି ଦିନ ପରେ ସେ ଦିଗ୍‌ବିଜୟରେ ବାହାରି ରାଜ୍ୟ ପରେ ରାଜ୍ୟ ଜୟ କଲେ । ଶତ୍ରୁମାନେ ତାଙ୍କ ସମ୍ମୁଖରେ ମୁଣ୍ଡ ନୁଆଇଁଲେ । ତାଙ୍କ ରାଜ୍ୟର ସୀମା ବୃଦ୍ଧି ପାଇଲା । କ୍ରମେ ପୃଥିବୀର ସମସ୍ତ ରାଜ୍ୟ ଉପରେ ସେ ଆଧିପତ୍ୟ ବିସ୍ତାର କଲେ । ସମସ୍ତେ ତାଙ୍କପ୍ରତି ଶ୍ରଦ୍ଧା ଏବଂ ସମ୍ମାନ ଜ୍ଞାପନ କଲେ ।

ପୃଥିବୀର ଚତୁର୍ଦ୍ଦିଗରେ ସେ ଚକ୍ରବର୍ତ୍ତୀ ରାଜା ନାମରେ ଯଶ ଅର୍ଜ୍ଜନ କଲେ । ସେ ତାଳ, ଜଙ୍ଘ, ଯବନ, ଶକ ଏବଂ ହୈହୟ ଇତ୍ୟାଦି ଦୁର୍ଦ୍ଦାନ୍ତ ବର୍ବରମାନଙ୍କୁ ଜୟକରି ନିଜର ବଶୀଭୂତ କରିଥିଲେ ।

କେବଳ ତ ସେମାନଙ୍କୁ ନିଜ ଅକ୍ତିଆରରେ ରଖିଲେ ନାହିଁ, ମହର୍ଷି ବଶିଷ୍ଠଙ୍କ ଆଦେଶ ଅନୁସାରେ ସେହି ଦୁର୍ଦ୍ଦାନ୍ତ ଜାତିର ଲୋକଙ୍କୁ ଯଥୋଚିତ ଦଣ୍ଡ ମଧ୍ୟ ଦେଲେ । କେତେକଙ୍କୁ ରାଜ୍ୟର ସୀମା ବାହାରକୁ ତଡ଼ିଦିଆଗଲା ।

ସାମ୍ରାଜ୍ୟ ଭିତରେ ଚୋରୀ, ଡକାୟତି ଲୋପ ପାଇଗଲା । ଚତୁର୍ଦ୍ଦିଗରେ ସୁଖ ଶାନ୍ତି ବିରାଜମାନ କଲା । ପ୍ରଜାମାନଙ୍କର ଭଲ ମନ୍ଦ ବୁଝିବାପାଇଁ ସମ୍ରାଟଙ୍କ ତରଫରୁ ଲୋକ ନିଯୁକ୍ତ ହେଲେ । ଗରିବ ପ୍ରଜାମାନଙ୍କୁ ଅର୍ଥ ସାହାଯ୍ୟ ମଧ୍ୟ ଦିଆଗଲା ।

ଏଥର ମହାରାଜ ସଗର, ଅଶ୍ୱମେଧ ଯଜ୍ଞ କରିବାପାଇଁ ଯୋଗାଡ଼ କଲେ । ଯଜ୍ଞର ଅଶ୍ୱକୁ ଛାଡ଼ ଦିଆଗଲା···

ମହାରାଜ ସଗରଙ୍କର ଏହି ବିଶ୍ୱବ୍ୟାପୀ କୀର୍ତ୍ତିକୁ ଦେଖି ସ୍ୱର୍ଗରେ ଦେବତାମାନେ ବିଚଳିତ ହୋଇପଡ଼ିଲେ । କାରଣ ତାଙ୍କର ପୁଣ୍ୟ ବଳରେ ସେ ଦେବଲୋକରେ କାଳେ ଆଧିପତ୍ୟ ବିସ୍ତାର କରିବେ ! ସଂସାରର ଜଣେ ମଣିଷର କବଳିତ ହେବାକୁ ସେମାନେ ପସନ୍ଦ ବା କରିବେ କେମିତି ? ନା, ତା' କଦାପି କରାଇଦେବେନାହିଁ···

ଦେବତାମାନେ ମଧ୍ୟ ଯଜ୍ଞରେ ବିଘ୍ନ ସୃଷ୍ଟି କରିବାକୁ ବାହାରି ପଡ଼ିଲେ । ସମସ୍ତେ ବସି ଗୋଟିଏ ଉପାୟ ଚିନ୍ତା କଲେ—ତା'ର ପରିଣାମ ସ୍ୱରୂପ ସେମାନେ ସଗରଙ୍କ ଯଜ୍ଞର ଅଶ୍ୱକୁ ଚୋରାଇ ନେଇ ଲୁଚାଇଦେଲେ ।

ମହାପ୍ରତାପୀ ରାଜା ସଗର ! କାହାର ପୁଣି ଏମିତି ଶକ୍ତି ଅଛି ତାଙ୍କ ଯଜ୍ଞ ଅଶ୍ୱକୁ ହରଣଚୋରି କରିନେବାକୁ !

ତାଙ୍କର ଷାଠିଏ ହଜାର ପୁତ୍ର, ଅଶ୍ୱକୁ ଅନୁସନ୍ଧାନ କରିବା ପାଇଁ ବାହାରି ପଡ଼ିଲେ । ପ୍ରତ୍ୟେକ ସ୍ଥଳରେ ତନ୍ନତନ୍ନ କରି ଅନୁସନ୍ଧାନ ହେଲା, କିନ୍ତୁ ଅଶ୍ୱର କୌଣସି ସମ୍ବାଦ ମିଳିଲା ନାହିଁ ।

ତା'ପରେ ସେମାନେ ପୂର୍ବଦିଗ ଆଡ଼କୁ ଅଗ୍ରସର ହେଲେ । ଯାଉ ଯାଉ ସେମାନେ ମହର୍ଷି କପିଳଙ୍କ ଆଶ୍ରମରେ ଯାଇ ପହଞ୍ଚିଲେ । ସେହିଠାରେ ହିଁ ଅଶ୍ୱଟି ବନ୍ଧା ହୋଇଥିଲା । ଏ ସବୁ ଦେବତାମାନଙ୍କର କାର୍ଯ୍ୟ···

ଦେବତାମାନଙ୍କର ଏହି କାର୍ଯ୍ୟ ମୂଳରେ ଅନ୍ୟ ଉଦ୍ଦେଶ୍ୟ ନିହିତ ଥିଲା । ସେମାନେ ଜାଣିଥିଲେ, ଅଶ୍ୱକୁ ଖୋଜିବାପାଇଁ ସଗରଙ୍କ ଷାଠିଏ ହଜାର ପୁତ୍ର ନିଶ୍ଚୟ ଏଠାକୁ ଆସିବେ । ଏଠାରେ ଅଶ୍ୱକୁ ଦେଖି ସେମାନେ ଚାଟିଭୁଣ୍ଡ ନିଶ୍ଚୟ କରିବେ— ତଦ୍ଦ୍ୱାରା କପିଳ ମହର୍ଷି ଭୟଙ୍କର ଉତ୍ତେଜିତ ହୋଇ ଅଭିଶାପ ଦେବେ ଏବଂ ସେମାନଙ୍କୁ ଭସ୍ମ କରିଦେବେ...

ଦେବତାମାନେ ଯାହା ଭାବିଥିଲେ ତାହା ହିଁ ହେଲା । ସଗରଙ୍କ ପୁତ୍ରଗଣ, ଅଶ୍ୱର ଅନୁସନ୍ଧାନ କରି କପିଳ ମୁନିଙ୍କ ଆଶ୍ରମରେ ପହଞ୍ଚିବା ପରେ ଅଶ୍ୱକୁ ଦେଖିବାକୁ ପାଇଲେ । ତା'ପରେ ତାଙ୍କର ପାଟିଗୋଳ ଆରମ୍ଭ ହୋଇଗଲା । ଏହି କଳହ ଫଳରେ କପିଳ ମୁନିଙ୍କ ସାଧନାରେ ବ୍ୟାଘାତ ଘଟିଲା । ସେ ସାଧନାଚ୍ୟୁତ ହେଲେ ।

ନିଜ ଚକ୍ଷୁ ଖୋଲି ସଗରଙ୍କ ସନ୍ତାନମାନଙ୍କୁ ଏହାର କାରଣ ପଚାରିବାପାଇଁ ସେ ଚାହିଁଲେ, କିନ୍ତୁ ତାଙ୍କ ଚକ୍ଷୁର ଦୀପ୍ତି ଏବଂ ତେଜୋଦୀପ୍ତ ଦୃଷ୍ଟିର ଶକ୍ତି ଏତେ ତୀବ୍ର ଥିଲା ଯେ, ସଗରଙ୍କର ସମସ୍ତ ପୁତ୍ର ଅଗ୍ନିଦଗ୍ଧ ହୋଇ ଭସ୍ମ ହୋଇଗଲେ ।

ମହାରାଜ ସଗରଙ୍କର ଆଉ ଜଣେ ରାଣୀ ଥିଲେ । ତାଙ୍କ ନାମ ଥିଲା କାମ୍ନୀ । ତାଙ୍କର ମଧ୍ୟ ଗୋଟିଏ ପୁତ୍ର ଥିଲା । ପୁତ୍ରର ନାମ ଅସମଞ୍ଜସ । ସେ ନଗରର ବାଳକମାନଙ୍କୁ ଫୁସୁଲାଫୁସୁଲା କରି ବାହାରକୁ ନେଇଯାଏ । ସେମାନଙ୍କ ସାଥିରେ ଖେଳେ, ତା'ପରେ ସେମାନଙ୍କୁ ସରଯୂ ନଦୀରେ ବୁଡ଼ାଇଦିଏ । ଏହିପରି ଭାବେ ନଗରର ଅନେକ ବାଳକଙ୍କୁ ସେ ସରଯୂ ନଦୀରେ ବୁଡ଼ାଇ ଦେଲା ।

ତାହାର ଏ ପ୍ରକାର କର୍ମ ଦେଖି ମହାରାଜ ସଗର ତା' ଉପରେ ଖୁବ୍ ଉତ୍ତେଜିତ ହୋଇପଡ଼ିଲେ । ତାକୁ ସେ ଘରୁ ବାହାର କରିଦେଲେ ।

ଅସମଞ୍ଜସ ପୂର୍ବ ଜନ୍ମର ଏକ ଯୋଗଭ୍ରଷ୍ଟ ଯୋଗୀ ଥିଲା । ତାକୁ ଘରୁ ବାହାର କରିଦେବା ପରେ ସେ ତପସ୍ୟା କରିବା ପାଇଁ ଜଙ୍ଗଲକୁ ଚାଲିଗଲା । ସେ ନିଜ ତପସ୍ୟାର ଶକ୍ତିବଳରେ ସବୁ ବାଳକମାନଙ୍କୁ ପୁଣି ଜୀବିତ ଅବସ୍ଥାରେ ସରଯୂ ନଦୀରୁ ବାହାରକୁ ନେଇଆସିଲା ।

ଅସମଞ୍ଜସର ଏ ପ୍ରକାର ଅଦ୍ଭୁତ କାର୍ଯ୍ୟ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ଚକିତ ହୋଇଗଲେ । କାରଣ ଏଭଳି କାର୍ଯ୍ୟ ସେ ଆଉ କେବେ କରିନଥିଲା । ସେ କରୁଥିବା ବିଶ୍ୱାସଘାତକତା ଏବଂ ଜଘନ୍ୟ କର୍ମର ପରିଚୟ ମାତ୍ର ସମସ୍ତେ ଏହା ପୂର୍ବରୁ ପାଇଥିଲେ । ସମସ୍ତେ କେବଳ ଆଶ୍ଚର୍ଯ୍ୟ ତ ହେଲେ ନାହିଁ, ବରଂ ଅତୀତର ସମସ୍ତ ଜଘନ୍ୟ କର୍ମକୁ ଭୁଲି ତାକୁ ଶ୍ରଦ୍ଧା କଲେ । ତଦ୍ଦ୍ୱାରା ଅସମଞ୍ଜସର ଆତ୍ମା ମଧ୍ୟ ଶାନ୍ତ ହେଲା । ଆତ୍ମସନ୍ତୋଷ ହିଁ ତାକୁ ପୂର୍ବାପେକ୍ଷା ବେଶି ସୁଖ ପ୍ରଦାନ କଲା ।

ଅସମଞ୍ଜସର ଗୋଟିଏ ମାତ୍ର ପୁତ୍ର ସନ୍ତାନ ଥିଲା । ତା'ର ନାମ ଅଂଶୁମାନ । ସେ ହିଁ ଯୁବରାଜରୂପେ ରାଜ୍ୟର ସମୁଦାୟ କାର୍ଯ୍ୟ ବୁଝୁଥିଲା ।

ଯଜ୍ଞଅଶ୍ୱ ଏପର୍ଯ୍ୟନ୍ତ ସୁଦ୍ଧା ମିଳିଲା ନାହିଁ କି ଷାଠିଏ ହଜାର ପୁତ୍ର ଫେରିଲେ ନାହିଁ—ଏହା ଭାବି ଭାବି ମହାରାଜ ସଗର ବିବ୍ରତ ହୋଇପଡ଼ିଲେ । ତା'ପରେ ସେ ଅଂଶୁମାନକୁ ଖୋଜିବାପାଇଁ ପଠାଇଲେ ।

ଅଂଶୁମାନ ସେମାନଙ୍କୁ ଖୋଜିବାପାଇଁ ଚତୁର୍ଦ୍ଦିଗକୁ ଗଲେ । କେଉଁଠି ହେଲେ ପାଇଲେ ନାହିଁ । ଶେଷରେ କପିଳ ମୁନିଙ୍କ ଆଶ୍ରମରେ ପହଞ୍ଚିଲେ । ତା'ର ଦୃଷ୍ଟି ମଧ୍ୟ ସେହି ଅଶ୍ୱ ଉପରେ ପଡ଼ିଲା, କିନ୍ତୁ ସେ ବୁଦ୍ଧିର ସହିତ କାର୍ଯ୍ୟକଲେ । ଅଶ୍ୱ ସକାଶେ ସେ ପ୍ରାର୍ଥନା ଜଣାଇଲେ ମୁନିଙ୍କ ସମ୍ମୁଖରେ ।

ଧ୍ୟାନରତ କପିଳ ମୁନି, ଅଂଶୁମାନର କାକୁତିମିନତି ଶୁଣିଲେ । ତା'ର ଭକ୍ତିଭାବ ଦେଖି ତାଙ୍କ ହୃଦୟରେ ପ୍ରସନ୍ନଭାବ ଜାଗରିତ ହେଲା । ଅଂଶୁମାନକୁ କହିଲେ : ଅଂଶୁମାନ ! ତୁମ ପ୍ରାର୍ଥନା ଶୁଣି ମୁଁ ଆନନ୍ଦିତ । ବର୍ତ୍ତମାନ ତୁମେ ଏହି ଅଶ୍ୱଟିକୁ ନେଇ ତୁମ ପିତାମହଙ୍କ ଅସମାପ୍ତ ଯଜ୍ଞକୁ ସମାପ୍ତ କର...ଯଦି ମହାରାଜ ସଗରଙ୍କ ଷାଠିଏ ହଜାର ପୁତ୍ରର ମୁକ୍ତି ଚାହିଁ, ତେବେ ସେଥିପାଇଁ ତୁମକୁ ପବିତ୍ର ସଲିଳା ଜାହ୍ନବୀକୁ ଏ ପୃଥିବୀ ଉପରକୁ ଆଣିବାକୁ ହେବ ।

ଅଶ୍ୱକୁ ନେଇ ଅଂଶୁମାନ ଘରକୁ ଗଲେ । ମନ ଭିତରେ ପ୍ରଚୁର ଉତ୍କଣ୍ଠା ଏବଂ ବିଚଳିତ ଭାବ ପୂର୍ଣ୍ଣ ହୋଇଥାଏ ।

ଅଶ୍ୱ ପହଞ୍ଚିବା ପରେ ମହାରାଜ ସଗରଙ୍କର ଅଶ୍ୱମେଧ ଯଜ୍ଞ ସମ୍ପୂର୍ଣ୍ଣ ହେଲା । ଶେଷରେ ସେ ଅଂଶୁମାନକୁ ରାଜସିଂହାସନରେ ବସାଇ ସ୍ୱର୍ଗଲୋକକୁ ଚାଲିଗଲେ । ତାଙ୍କ ସଦୃଶ ପ୍ରତାପୀ, ପ୍ରଜାପ୍ରିୟ, ନ୍ୟାୟବାନ ରାଜା ଏ ସଂସାରରେ ବାସ୍ତବିକ ବିରଳ ।

